# ବେଜେଲଗେଟ୍


ଲେଖକ

ଅଧ୍ୟାପକ ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର, ଏମ୍. ଏ.



ପ୍ରକାଶକ

ପ୍ରଜାତନ୍ତ୍ର ପ୍ରଚାର ସମିତି — କଟକ

୧୯୫୪

ମୂଲ୍ୟ ଦୁଇଟଙ୍କା ମାତ୍ର

# ଗ୍ରନ୍ଥ-ପ୍ରବେଶ

ଆଧୁନିକ ଓଡ଼ିଆ ସାହିତ୍ୟରେ ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର ଜଣେ ସୁପ୍ରତିଷ୍ଠିତ ବ୍ୟକ୍ତି । ଓଡ଼ିଶାର ପ୍ରାୟ ସମସ୍ତ ପତ୍ର ପତ୍ରିକାରେ ଶ୍ରୀ ଗୋପାଳ ଚନ୍ଦ୍ରଙ୍କ ଲେଖା ପ୍ରକାଶ ପାଇଥାଏ । ତାଙ୍କର ସାହିତ୍ୟ ସାଧନା ତାଙ୍କର ସମସ୍ତ ଲେଖାରେ ପରିସ୍ଫୁଟ । ଏପରି ଏକ ସିଦ୍ଧ ହସ୍ତରେ ଲିଖିତ ଏକ ତତ୍କାଳୀନ ଘଟଣା ସମ୍ବନ୍ଧରେ ନାଟକ କୌତୂହଳପୂର୍ଣ୍ଣ ଓ ଆନନ୍ଦ-ଦାୟକ ହେବା ସ୍ୱାଭାବିକ । ଆଜି ତା ଏକ ସୁଦୂର ଅତୀତ ଇତିହାସ ବୋଲି ମନେ ହେଉଛି । କାରଣ ଘଟଣାଚକ୍ରର ବେଗ ଅତି ବେଶୀ ଓ ସେଥିରେ ପରମ୍ପରା ମନେ ରଖି କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବେଶୀ କାଳ ସ୍ଥିର ରହିବାର ଅବକାଶ ନାହିଁ । କିନ୍ତୁ ବାସ୍ତବିକ ନାଟକ ବର୍ଣ୍ଣିତ ଘଟଣାଟି ଏହି ସେ ଦିନର । ପ୍ରାଚୀନ ଗଡ଼ଜାତ ପ୍ରଥା ବିରୋଧରେ ଆନ୍ଦୋଳନ ଓ ସେ ଆନ୍ଦୋଳନରେ ଜନତାର ଉଦ୍‌ଭ୍ରାନ୍ତ ଉନ୍ମାଦ, ଯାହାର ପରିଣାମ ବ୍ରିଟିଶ ସୈନ୍ୟବାହିନୀର ମେଜର ଶ୍ରେଣୀ ଜଣଙ୍କର ହତ୍ୟା । ମେଜର ବେଜେଲ ଗେଟ୍ ମୋର ଜଣେ ସୁପରିଚିତ ବନ୍ଧୁ-ଥିଲେ ଓ ବ୍ୟକ୍ତି ହିସାବରେ ତାଙ୍କର ବହୁ ସଦ୍‌ଗୁଣ ଥିଲା ଓ ସେ ଧୀର ପ୍ରକୃତିର ଲୋକ ମଧ୍ୟ ଥିଲେ । ତାଙ୍କର ହତ୍ୟାର ଅଳ୍ପ ସମୟ ପରେ ମୋର ସେ ଘଟଣାସ୍ଥଳ ଠି ପହଞ୍ଚିବାର ଯୋଗ ମଧ୍ୟ ଘଟିଥିଲା । ତାଙ୍କ ହତ୍ୟାପରାଧରେ ମୋତେ ଲିପ୍ତ କରିବାର ଉଦ୍ୟମ ମଧ୍ୟ ହୋଇଥିଲା । ମାତ୍ର ମୋର ଅନ୍ତରଙ୍ଗ ବନ୍ଧୁ ମିସ୍ ଅଗାଥା ହରିସନ୍‌ଙ୍କ ଉଦ୍ୟମରେ ମୁଁ ସେଥିରୁ ମୁକ୍ତ ହୋଇଥିଲି । ସେତେବେଳକାର ରଣପୁର ଦରବାରର

କର୍ମକର୍ତ୍ତାମାନେ ଯେ ଲୋକ ହିସାବରେ କେହି ନିଷ୍ଠୁର ବା ଅପାରଗ ଥିଲେ ତା ନୁହେଁ । ସେମାନେ ମଧ୍ୟ ନିଜ ବିଚାର ଅନୁସାରେ ନିଜର କର୍ତ୍ତବ୍ୟ ସମ୍ପାଦନ କରୁଥିଲେ । ରଣପୁରର ଜନତା ଯେ ହିଂସ୍ର ଓ ନିଷ୍ଠୁର ଥିଲେ ତା' ମଧ୍ୟ ନୁହେଁ । ସେମାନେ ସରଳ ଗ୍ରାମବାସୀ ନିର୍ଘଣାର ଅନ୍ଧକାର ଭିତରେ ଅଙ୍ଗୀବନ ବାସ କରି ଶେଷରେ ଅଣାର ଆଲୋକର ସନ୍ଧାନ ପାଇଥାନ୍ତି ମାତ୍ର । ଅଜି ଦୂରରୁ ସେ ସମୟର ଆନ୍ଦୋଳନକୁ ଦୃଷ୍ଟିପାତ କରି କୌଣସି ବ୍ୟକ୍ତି ବିଶେଷଙ୍କୁ ଦୋଷ ଦେଇ ହେବ ନାହିଁ । ଏକ ପ୍ରଥା ଏକ ଅବସ୍ଥା ବିରୋଧରେ କାଳ ଗତିରେ ମନୁଷ୍ୟ ମତ ଓ ରୁଚିର ଅଭିଯାନ । ଏହାହିଁ ସେ ସମୟର ବାସ୍ତବିକ [illegible]ନା । ସେହି ସମୟର ଚିତ୍ରକୁ ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର ନାଟକ ଆକାରରେ ଅଙ୍କନ କରିଛନ୍ତି । ଅତି ନିକଟ ଅତୀତର ଘଟଣା ତତ୍‌ସଂପୃକ୍ତ ବହୁ ବ୍ୟକ୍ତି ବିଶେଷ ବର୍ତ୍ତମାନ ଜୀବିତ ଓ କର୍ମକ୍ଷମ ଅଛନ୍ତି ସ୍ୱାଧୀ ସମସ୍ତେ ଅବସ୍ଥାଚକ୍ରରେ ନିଜର ମତ ଓ ମନ ମଧ୍ୟ ବଦଳାଇ ଦେଇ ସାରିଛନ୍ତି । ଏହି ପରିସ୍ଥିତିରେ ହୁଏତ ନାଟକଟି କେତେକଙ୍କୁ ଅପ୍ରିୟବୋଧ ହେବ । ସଦ୍ୟ ଘଟଣା ଘେନ ଲେଖା ତତ୍କାଳ ସାହିତ୍ୟ ନାମରେ ପରିଚିତ । କେବଳ ସେଥିପାଇଁ ସେ ଦୃଷ୍ଟିରୁ ତତ୍କାଳ ସାହିତ୍ୟ ମଧ୍ୟ ନୁହେଁ । କାରଣ ଘଟଣାଟି ସମ୍ପୂର୍ଣ୍ଣ ସଦ୍ୟ ବା ପ୍ରାଚୀନ ମଧ୍ୟ ନୁହେଁ । ଏହି ବିଚାରଟିକୁ ଛାଡ଼ିଦେଇ ଲେଖକଙ୍କ ଲେଖା ବିଚାର କରିବାକୁ ହେବ । ସାହିତ୍ୟ ହିସାବରେ ଲେଖାଟି ସୁନ୍ଦର ଓ ସୁନ୍ଦର ଭାବରେ କଳ୍ପିତ ଭବିଷ୍ୟତ ପାଇଁ ଏ ଲେଖାଟି ଏକ ବିପ୍ଳବାତ୍ମକ ଯୁଗର ସଙ୍କେତ ସ୍ୱରୂପ ଓଡ଼ିଆ ସାହିତ୍ୟରେ ରହିବ ଏଥିରେ ସନ୍ଦେହ ନାହିଁ ।

ତା ୧୦।୨।୧୯୫୪ — ଶ୍ରୀ ହରେକୃଷ୍ଣ ମହତାବ

# ଲେଖକର ନିଜ କଥା

ସେ ପ୍ରାୟ ୧୯୩୯ ମସିହା ଜାନୁୟାରୀ ୬ କିମ୍ବା ୭ ତାରିଖର ଏକ ସକାଳ । ବାଣପୁର ହାଇସ୍କୁଲର ବନ ବିଦ୍ୟାଳୟର ସହକାର କୁଞ୍ଜରେ ଆମର ପଢ଼ା ହେଉଥାଏ । ସକାଳର ନାଲି ନାଲି ସୂର୍ଯ୍ୟ କିରଣ ପୃଥିବୀର ଘାସ ଶେଯରେ ଲୋଟି ଯାଇଥିଲା । ମାଟ୍ରିକୁଲେସନ ନବମ ଶ୍ରେଣୀର ଛାତ୍ର ମୁଁ । ହଠାତ୍ ଶିକ୍ଷକ ଶ୍ରେଣୀ ଭିତରେ ପଶି ଆସି କହିଲେ, "ରଣପୁରରେ ବିପ୍ଳବ ।"

ପୁଷ ପୁନିଅଁ ଜାନୁୟାରୀ ୫ ତାରିଖ ସନ୍ଧ୍ୟାରେ ଓଡ଼ିଶା ଗଡ଼ଜାତ ସମୂହର ପଲିଟିକାଲ ଏଜେଣ୍ଟ ମେଜର୍ ବେଜାଲଗେଟ୍ ରଣପୁର ଗଡ଼ରେ ପ୍ରାଣ ହରାଇଥିଲେ ।

ରାତି ରାତି ରଣପୁରବାସୀ ଘରଦ୍ୱାର ଶୂନ୍ୟ କରି କିଏ କୁଆଡ଼େ ପ୍ରାଣ ବିକଳରେ ନିକଟ ଖାସମାହାଲ ଅଞ୍ଚଳକୁ ଚାଲି ଯାଇଥିଲେ ।

ଏହା ପରେ ରଣପୁର ସୀମା ସିକୋ ଅଞ୍ଚଳକୁ ମୁଁ ଲୁଚି ଲୁଚି ଗଲି । ସେଠାରେ ଆମର ବନ୍ଧୁ-ବାନ୍ଧବ, ସାହି ପଡ଼ିଶା ଲୋକଙ୍କୁ ଶରଣାର୍ଥୀ ଅବସ୍ଥାରେ ଦେଖି କାନ୍ଦି ପକାଇଲି । ସମସ୍ତେ କହୁଥାନ୍ତି, "ରଣପୁର ଫେରିବେ ନାହିଁ । ସାହେବ ମରିଛି । ସରକାର ଘର ରଣପୁର ଜାଳି-ପୋଡ଼ି ଦେବ ।" ସିକୋରୁ ରାମେଶ୍ୱର ବାଟ ଦେଇ ନିରାକାରପୁର ଠାରୁ ଜାଜପଡ଼ା ଗଲି । ସେ ଦିନ ରାତିରେ ପୋଲିସ ମୋତେ ବହୁତ ଜେରା କରିଥିଲେ ।

ସାହେବ ମଲ୍ଲ । ତା ପରେ ପରେ ରଣପୁରର ଦୁଇଜଣ ଫାଶୀ ଖୁଣ୍ଟରେ ଠିଆ ହେଲେ । ଅଭ ବହୁ କର୍ମୀ ଜେଲ ଦଣ୍ଡ ଭୋଗ କରିଥିଲେ । ଏହି ସାହେବ ହତ୍ୟା ବଗ୍ଟର ବେଳେ ରଣପୁର ଅମଲାମାନେ ଯେଉଁ ଅତ୍ୟାଗ୍ଟର କରିଛନ୍ତି ତାହା ବର୍ଣ୍ଣନାତୀତ ।

ଲୁଟ ମିଛ, ନାଇ ବେତ, ଘୋଷରି ପାହାର ଜେଲ ଜୋରିମନା, ବେଠି ବେଗାରି ଯେଉଁଠି ଅଛି ଥିଲ; ସେଠି ଧନେ ଦେଶର ସ୍ୱାଧୀନତା ଯଜ୍ଞ ବେଦୀରେ ରଘୁ ମହାନ୍ତି ଅଭ ଦିବାକର ପରିଡା ଆହୁତି ହେଲେ ।

ଏହା ପରେ ୧୯୪୭ ବେଳକୁ ଗଡ଼ଜାତମାନଙ୍କରେ ପ୍ରଜାମଣ୍ଡଳର ଦ୍ୱିତୀୟ ପ୍ରସ୍ଥ ଆନ୍ଦୋଳନ ଘନେଇ ଉଠିଲା । ରଣପୁରରେ ସେତେବେଳେ ଦରବାରର ପ୍ରହସନ ଗ୍ଟଲୁଥାଏ । କଲେଜ ଛାଡ଼ି ମୁଁ ଏହି ଗଡ଼ଜାତ ଆନ୍ଦୋଳନରେ ଯୋଗଦାନ କଲି । ଅନ୍ୟାନ୍ୟ ଗଡ଼ଜାତରେ ଏହି ପ୍ରଜାମଣ୍ଡଳ ଆନ୍ଦୋଳନ ଅଧିକ ଦୃଢ଼ତର ହେଲା ।

ତଥାପି 'ପ୍ରଜାମଣ୍ଡଳ'ର ବଳ ପରୀକ୍ଷା ପାଇଁ ଦରବାର ଶାସନ ୧୯୪୭ ମସିହାର ଗୋଟାଏ 'ଭୋଟ' ଆରମ୍ଭ କଲେ । ଭୋଟରେ ଅମର ପ୍ରଜାମଣ୍ଡଳ ପ୍ରାର୍ଥୀମାନେ ଜୟ ଲାଭ କଲେ । ତଥାପି ଦରବାର ଏଥର ଏପଟ ସେପଟ କରି ହଟ ଚମଟ କଲେ । ଏହା ପରେ ଗଡ଼ଜାତ ମିଶ୍ରଣ ହୋଇଗଲା ।

ରଣପୁର ଗଡ଼ଜାତର ଏହି ବିପ୍ଳବାତ୍ମକ ଇତିହାସକୁ କେନ୍ଦ୍ରକରି "ବେଙ୍ଗଲଗେଟ୍ ଓ ରଘୁ ଦିବାକର" ନାଟକଟି ଲିଖିତ । ନାଟକଟି ଅନେକଦିନରୁ ଲେଖି ସାରିଥିଲି । ମାତ୍ର ଉପଯୁକ୍ତ ଅର୍ଥାଭାବ ବଶତଃ ପ୍ରକାଶିତ ହୋଇ ପାରୁ ନଥିଲା ।

ଏବେ "ପ୍ରଜାତନ୍ତ୍ର ପ୍ରଗ୍ଟର ସମିତି" ପୃଷ୍ଠପୋଷକତା ଦେଖାଇ 'ନାଟକଟି' ପ୍ରକାଶ କରୁଥିବାରୁ ମୁଁ କର୍ତ୍ତୃପକ୍ଷଙ୍କୁ କୃତଜ୍ଞତା ଜଣାଉଛି ।

ଓଡ଼ିଶାର ବଶିଷ୍ଠ ଐତିହାସିକ ସାହିତ୍ୟିକ ଏବଂ ପ୍ରଧାନ ଜନନାୟକ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର ବହୁ ମୂଲ୍ୟବାନ ସମୟ ବ୍ୟୟରେ ଏହି ଗ୍ରନ୍ଥର 'ପରିଚୟ' ଲେଖି ଦେଇଥିବାରୁ ମୁଁ ତାଙ୍କୁ ହୃଦୟର କୃତଜ୍ଞତା ଜଣାଉଛି ।

'ଗଡ଼ଜାତ' ମାନଙ୍କର ବୈପ୍ଳବାତ୍ମକ ଇତିହାସ ଏ ପର୍ଯ୍ୟନ୍ତ ଲେଖା ଯାଇନାହିଁ । 'ଢେଙ୍କାନାଳଗେହ୍ ଓ ରଘୁ ଦିବାକର,' ସେହି ବିରାଟ ଇତିହାସର ଛିନ୍ନ ପତ୍ରରୂପେ ଯଦି କେଉଁ ସାହିତ୍ୟିକ ବା ଐତିହାସିକଙ୍କୁ ସାହାଯ୍ୟ କରିପାରେ ତାହାହେଲେ ଲେଖକ ନିଜର ଶ୍ରମ ସାର୍ଥକ ମନେ କରିବ । ନାଟକୀୟ ପରିକଳ୍ପନାରେ କେତେକ ସ୍ଥାନରେ ନିଛକ ଇତିହାସର ବ୍ୟତିକ୍ରମ କରାଯାଇଅଛି ।

ବହିରେ ଦେଖା 'ଯାଇଥିବା' ମୁଦ୍ରଣ ତ୍ରୁଟି ପାଠକମାନେ କ୍ଷମା କରିବେ ବୋଲି ଆଶା ।

ପରିଶେଷରେ ଏହି ନାଟକ ମୁଦ୍ରଣରେ ପ୍ରଜାତନ୍ତ୍ର ପ୍ରେସର ପରିଚାଳକ ଶ୍ରୀଯୁକ୍ତ ବିଶ୍ୱମ୍ଭର ପରିଡ଼ାଙ୍କ, ବ୍ୟକ୍ତିଗତ ଉତ୍ସାହ ଓ ସହାନୁଭୂତି ନିମିତ୍ତ ଲେଖକ ତାଙ୍କ ନିକଟରେ ଋଣୀ ।

୨୬।୧।୧୯୫୪ } ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର
କଟକ } ଅଧ୍ୟାପକ, ରେଭେନ୍ସା କଲେଜ

# କୃତଜ୍ଞତା

ମୋର ବନ୍ଧୁ, ରଣପୁର ଆନ୍ଦୋଳନର ସହକର୍ମୀ, କବି ଗୋପାଳ ଚନ୍ଦ୍ର ମିଶ୍ରଙ୍କ ବନ୍ଦ୍ରୋହୀ ଲେଖନୀରୁ ଏଥି ପୂର୍ବରୁ 'ବିଦ୍ରୋହୀ ଦିବାକର' କବିତା ଗ୍ରନ୍ଥ ପ୍ରକାଶିତ ହୋଇଛି—ରଣପୁରର ଜନସାଧାରଣ ଏପର୍ଯ୍ୟନ୍ତ ସହିଦ୍ ରଘୁ ମହାନ୍ତି ଓ ଦିବାକର ପରିଡ଼ାଙ୍କର ସ୍ମୃତି ରକ୍ଷା ପାଇଁ କିଛି କରିପାରି ନାହାନ୍ତି । ରଣପୁରର ଜଣେ ସାଧାରଣ ନାଗରିକ ଓ ଦେଶ-ପ୍ରେମୀ ହିସାବରେ ବନ୍ଧୁ ମିଶ୍ରଙ୍କର ସହିଦ୍‌ମାନଙ୍କ ପୂଜା ବେଦୀରେ ପ୍ରଥମ ଅର୍ଘ୍ୟ 'ବିଦ୍ରୋହୀ ଦିବାକର' ଓ ଦ୍ୱିତୀୟ ଏଇ ନୈବେଦ୍ୟ 'ରକ୍ତାକ୍ତ ରଣପୁର' ପ୍ରକାଶିତ ହେଉଛି ।

୧୯୩୮ ମସିହା ଓଡ଼ିଶାର ଅଧିକାଂଶ ଗଡ଼ଜାତମାନଙ୍କରେ ପ୍ରଜା ବିକ୍ଷୋଭ ଦେଖା ଦେଇଥାଏ । ରଣପୁରରେ ମଧ୍ୟ ସେଇ ବିକ୍ଷୋଭ ଦେଖା ଦେଲା ପ୍ରଜାମଣ୍ଡଳ ନେତୃତ୍ୱରେ—ସେତେବେଳେ ପ୍ରଜାଙ୍କ ଅଗରେ ମାଛ ପଡ଼ିଲେ ନବ ଖଣ୍ଡ ହେଉଥାଏ । ଗର୍ଭିଣୀ ଗାଈ ବାଛି ଛାଡ଼ ଦେଉଥାଏ—ପାରିଧି ବେଠିରେ ପ୍ରଜାକୁଳ ହନ୍ତସନ୍ତ ହେଉଥାନ୍ତି । ଏଇ ପାରିଧି ବେଠିମାନଙ୍କରେ ରଣପୁରର କେତେ ଝିଅ ବୋହୂଙ୍କର ମୁଣ୍ଡରୁ ସିନ୍ଦୂର ଲିଭିଛି ଓ ହାତରୁ ଶଙ୍ଖା ଭଙ୍ଗିଛି ତାର କଳନା ନାହିଁ —ତାର ଉତ୍ତର କେବଳହିଁ ପ୍ରେତ ପୁରୀରୁ ସେମାନଙ୍କର ପ୍ରେତାତ୍ମା ଦେବେ । ରଣପୁରର ଅମ୍ବ ତୋଠା, ପୋଖରୀ, ଗାଡ଼ିଆ ସବୁ ରଜାଙ୍କର । ସର୍ବୋପରି ରଜାଙ୍କର ହାତୀ କଳସ ଚଳା କେତେ ଜଣଙ୍କର ଦୌରାତ୍ମ୍ୟ —ସାହାଯ୍ୟ ପାଇଁ ଲାଞ୍ଚ ମିଛର ଶେଷ ସୀମା ଟପିଥାଏ ।

ଏଇ ସମସ୍ତ ଅତ୍ୟାଚାରର ରଣପୁରର ନିଷ୍ପେଷିତ ଜନସାଧାରଣ ଆଉ ବରଦାସ୍ତ କରି ପାରିଲେ ନାହିଁ । ଗୃନ୍ଦପୁରରେ ଦଶଦୋଳ ପଡ଼ିଆରେ ଗଠିତ ହେଲା ପ୍ରଜାମଣ୍ଡଳ, ରଘୁ ମହାନ୍ତି ଏବଂ ଦିବାକର ପରିଡ଼ା ପ୍ରଭୃତିଙ୍କ ଉଦ୍ୟମରେ । 'ରଣପୁର ପ୍ରଜାମଣ୍ଡଳ କି ଜୟ' 'ମହାତ୍ମା ଗାନ୍ଧିଙ୍କ ଜୟ' 'ହୁକୁମ ଶାସନ ଧ୍ୱଂସ ହେଉ' ଶବ୍ଦରେ ମଣିନାଗ ପାହାଡ଼ କମ୍ପି ଉଠିଲା ।

ଶ୍ରୀଯୁକ୍ତ ମହତାବ ସେତେବେଳେ ରଣପୁର ଆନ୍ଦୋଳନକୁ ପ୍ରେରଣା ଓ ନେତୃତ୍ୱ ଦେଉଥାନ୍ତି । ହଠାତ୍ ଦିନେ ୧୯୩୯ ମସିହା ଜାନୁୟାରୀ ୫ତାରିଖରେ ରଣପୁର ଗଡ଼ରେ ଶାନ୍ତିପୂର୍ଣ୍ଣ ଜନସାଧାରଣ

ସଭା କରୁଥିବା ଅବସ୍ଥାରେ ତତ୍କାଳୀନ ପଲିଟିକାଲ ଏଜେଣ୍ଟ ମେଜର ବେଜଲଗେଟ ପୋଲିସ ଫଉଜ ନେଇ ପହଞ୍ଚିଲେ ।

ବେଜଲଗେଟ୍‌ଙ୍କ ଆସିବା ସଙ୍ଗେ ସଙ୍ଗେ ଦୁଇଜଣ ଲୋକଙ୍କୁ ଆଘାତ କରାଯାଇ ଥାଏ । ଫଳରେ ଇତିହାସ ସୃଷ୍ଟି ହେଲା ।

ସାହେବଙ୍କ ମୃତ୍ୟୁପରେ ମହତାବ ରଣପୁର ଗଡ଼ଠାରେ ପହଞ୍ଚିଲେ କିନ୍ତୁ ସେତେବେଳକୁ କଥା ସରିଯାଇଥିଲା । ରଣପୁରର ଲୋକ ଖୋର୍ଦ୍ଧା ଖାସମାହାଲକୁ ପଳାଇବାକୁ ଆରମ୍ଭ କରିଦେଇଥିଲେ । ପୋଲିସ ତଦନ୍ତ ଚାଲିଲା । ଦୁଇଜଣ ନିର୍ଦ୍ଦୋଷ ଲୋକ ରଘୁନାଥ ଓ ଦିବାକରଙ୍କ ବେକରେ ସେମାନଙ୍କ ଜନ୍ମମାଟି ବନ୍ଧୁବାନ୍ଧବଙ୍କ ଠାରୁ ଦୂରରେ ଫାଶୀ ଲଗାଇ ଦିଆଗଲା । ହଜାରିବାଗ ଜେଲରେ ଉଭୟଙ୍କୁ ୧୯୩୯ ମସିହା ମେ ମାସ ୯ ତାରିଖରେ ଫାଶୀ ଦିଆଗଲା । ରଘୁନାଥ ଜନ୍ମ ଗ୍ରହଣ କରିଥିଲେ, ୧୯୧୦ ମସିହା ଅଷାଢ଼ ଶୁକ୍ଳପକ୍ଷ ଏକାଦଶୀ ଦିନ ଓ ଦିବାକର ଜନ୍ମଗ୍ରହଣ କରିଥିଲେ ୧୯୧୮ ମସିହା ମାର୍ଗଶୀର ମାସ ପ୍ରଥମ ଗୁରୁବାର ଦିନ ।

କିନ୍ତୁ ଆନ୍ଦୋଳନକୁ ମାରି ଦିଆଯାଇ ପାରିଲା ନାହିଁ—ରାଜାଙ୍କର କୁଳବଧୂଙ୍କ ଶାସନ କାଳରେ—ପ୍ରଜା ଆନ୍ଦୋଳନ ଆଉ ଥରେ ଘନେଇ ଆସିଲା । ମୁଁ ଏବଂ ବନ୍ଧୁ ଗୋପାଳଚନ୍ଦ୍ର ମିଶ୍ର କଲେଜ ଛାଡ଼ି ଏଥିରେ ଯୋଗଦାନ କଲୁ । ନୂଆ ରଣକୌଶଳରେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ଭାଙ୍ଗିବାକୁ ଚେଷ୍ଟା ହେଲା, କିନ୍ତୁ ବିଫଳ ହେଲା । ବ୍ରିଟିଶ ସରକାର ଏ ଦେଶରୁ ଅପସରି ଗଲା । ସାମନ୍ତବାଦ୍ ଲୁପ୍ତ ହେଲା, ଦେଶ ସ୍ୱାଧୀନ ହେଲା । ରଣପୁରର ଇତିହାସ ପୂରାପୂରି 'ବେଜଲଗେଟ'ନାଟକରେ ଫୁଟି ପାରିନାହିଁ । ଏକ ନାଟକରେ ଏ ସମସ୍ତ ଫୁଟିବା ମଧ୍ୟ ସମ୍ଭବ ନୁହେଁ । କିନ୍ତୁ ଏ କଥା ନିଶ୍ଚୟ ଯେ 'ବେଜଲଗେଟ' ନାଟକ ରଣପୁର ଅତୀତର ଗୌରବମୟ ଇତିହାସର ଏକ ସ୍ୱର୍ଣ୍ଣମୟ ପୃଷ୍ଠା । ସେଥିପାଇଁ ମୁଁ ମୋର ବନ୍ଧୁ ଗୋପାଳଚନ୍ଦ୍ର ମିଶ୍ରଙ୍କୁ ଧନ୍ୟବାଦ ଜଣାଉଛି ।

ତା ୩୧।୧୨।୧୯୫୭ } ଶ୍ରୀ ରାମଚନ୍ଦ୍ର ରାମ, ଅଡ଼ଭୋକେଟ
ଚାନ୍ଦିନୀଚୌକ, କଟକ

# ନାଟକୋଲ୍ଲିଖିତ ଚରିତ୍ରଗଣ

## —ପୁରୁଷ—

ରଘୁନାଥ—ବିଦ୍ରୋହୀ ନେତା

ଦିବାକର ,,

ମେକେଞ୍ଜେଲ୍‌ଗେଟ—ପଲିଟିକାଲ ଏଜେଣ୍ଟ

ଦେଓ୍ୟାନ—ଫଗୁ ମହାନ୍ତି

ମେଂଜର—ଗୋପୀବାବୁ

ପୋଷ୍ଟ ମାଷ୍ଟର—ହଳଧର ବାବୁ

ଦାରୋଗା—ଶ୍ୟାମବନ୍ଧୁ

କୁର୍ବାନଖାଁ—

କ୍ଷେତ୍ରବାସୀ ବଗଲ—

କପିଲ,

ଅନେକ

ଗ୍ରାମ୍ୟଯୁବକ—ନୀଳ, ରାମ, ସହଦେବ, ରତ୍ନାକର, ବେନ୍ଦୁଆ

ବୁଢ଼ାରାଜା

ବଳବନ୍ତରାୟ

## ପ୍ରଜାମଣ୍ଡଳ କର୍ମୀ ପ୍ରଭୃତି

## ନାରୀ

କମଳା—

ଲୁନୁ—

କରବୀ

ଲବଙ୍ଗଦେବୀ—ସ୍ୱଚ୍ଛ

# ପ୍ରଥମ ଅଙ୍କ

## ପ୍ରଥମ ଦଶ୍ୟ

[ ଦେଓ୍ୱାନ ଫଗୁ ମହାନ୍ତି, ମଲ୍ଲୀମାଳ ପିନ୍ଧି ବସିଛନ୍ତି । ଦେଓ୍ୱାନଙ୍କ ବଙ୍ଗଳା; ସାଜସଜ୍ଜା ସବୁ ପାଶ୍ଚାତ୍ୟ ଧରଣର,...ପଶା ଖେଳ ଚାଲିଛି; ରେଞ୍ଜର ମାଜେଷ୍ଟ୍ରେ ଗୋପୀନାଥ, ପୋଷ୍ଟମାଷ୍ଟର ହଳଧର ମହାନ୍ତି, ଦାରୋଗା ଶ୍ୟାମବନ୍ଧୁ ମହାନ୍ତି ପ୍ରଭୃତିଙ୍କ ଗହଣରେ, ଘରଟି ବିଳାସର ଆଡ଼ମ୍ବର ପରିପାଟିରେ ପୂର୍ଣ୍ଣ । ]

ଦେଓ୍ୱାନ ଫଗୁ ମହାନ୍ତି—(ପଶା କାଠି ପକାଇ) କଚେ ପୁଅ ବାର...

ଫରେଷ୍ଟର ଗୋପୀ ବାବୁ—ହେଲଟି ପଞ୍ଚଲଗରେ...

ପୋଷ୍ଟମାଷ୍ଟର—ପନ୍ଦରେ, ( ହାତ ପାଚି କରି ପାଶାଖେଳ ଭିତରେ ) ଆଜ୍ଞା, (ଦେଓ୍ୱାନଙ୍କୁ ଲକ୍ଷ୍ୟ କରି) ଏବେ ଗୁରୁଦାନ ହେଲା ତାକ ଘରକୁ ପନର ଶହ ଟଙ୍କା ଆସିଛି ।

ଦେଓ୍ୱାନ—ତାହାର, କାହାର...

ପୋଷ୍ଟମାଷ୍ଟର—ନଡ଼ିପୁର ଚନ୍ଦ୍ରାମଣି ନାହାକର ଆଠ ଶହ ଆଉ ବ ସୁଲିଆ, କେନ୍ଦୁପଲ୍ଲୀ, ନରସିଂହପୁର, ଗୋପାଳପୁର ଗାଁର କାହା କାହା ନାଁରେ ସବୁ ଆସିଛି ......

ଦେଓ୍ୱାନ—ରେଂଜରଙ୍କୁ ପଚାର (ହସଟା ହସି)

ରେଂଜର—ଆଜ୍ଞା ସେ କଣ ବଳେଇ ଯିବ...

ଦାରୋଗା—ଆଜ୍ଞା ମୁଁ ସବୁ ଠିକ୍ କରି ଦେଉଛି......

( ପଶା ଖେଳ ଚାଲିଥାଏ, ପାନ, ଗନ୍ଧ ଚନ୍ଦନ ଫୁଲମାଳ ଆସି ଥୁଆ ହୋଉଥାଏ ।)

ଦେଓ୍ୱାନ—ଦେଖ ହଳଧର ବାବୁ, ଯେମିତି ପଇସାଟାଏ କେହି ନ ପାଆନ୍ତି ।

ଦେର୍ଓ୍ୟାନ—ଷ୍ଟୁର୍ ଅଲ୍ଲ "ଶୀକାର"ରେ ବଜେ ହୋଇଛନ୍ତି ।

ରେଂଜର—ସାଙ୍ଗରେ କିଏ ସବୁ ଯାଇଛନ୍ତି ।

ଦେର୍ଓ୍ୟାନ—ବଳବନ୍ତସିଂ, ଲଙ୍ଗା ସ୍ୱାଇଁ, କମଲ ପଧାନ ଯାଇଛନ୍ତି ।
ବାଘୁଆ ଦାମ ସିଂହ ଯାଇଛି । କରଜା ପଲ୍ଲ ମାଲରେ ଶ୍ୱିକ ହୋଇଛି ।

ରେଂଜର—ଶୀଘ୍ର ଖେଳ ବନ୍ଦ ହେଲେ ଯିବା—

ଦେର୍ଓ୍ୟାନ—ଆଜି ଗୁଲ୍—କୁଆଡ଼େ ଯିବ ?

ପୋଷ୍ଟମାଷ୍ଟର—ନାଇଁ, ବାଙ୍କ ଦ' ଯାଗାକୁ ଖବର ଦେବାକୁ ହେବ ।
(ଘଣ୍ଟା ଖେଳ ସରିଲା—ପୋଷ୍ଟ ମାଷ୍ଟର, ଦାରୋଗା, ରେଂଜର ଗଲେ) (ଗୃଜର ଲକ୍ଷ୍ମଣ ଅସି ପାଖରେ ପଡ଼ିଥିବା ପଲଙ୍କ ସଜ କରିଦେଇ ଯେମିତି ଗଲା, କିଛି ସମୟ ପରେ ଗୋଟିଏ ତରୁଣୀର ପ୍ରବେଶ)
ଦେର୍ଓ୍ୟାନ ତରୁଣୀଙ୍କ ଦେଖି ଖୁବ୍ ଉଲ୍ଲସିତ...
ତରୁଣୀ ଶେଯ ତକିଆ ଠିକ୍ କରି ଦେଲା...
ଜଳୁଥିବା ପ୍ରଦୀପକୁ ଟିକିଏ କମ୍ତି କରି ଦେଇ ଦେଇ ।

ଦେର୍ଓ୍ୟାନ – ଜାଣ ହେମ, ଏତେ ବେଳକୁ ଆମ କଥା ମନେ ପଡ଼ିଲା ?

ତରୁଣୀ – ବହୁତ ରାତି ହେଲାଣି, ଆପଣ ଏଥର ଶୁଅନ୍ତୁ...

—ପଟ୍ଟପତନ—

---

## ୨ୟ ଦୃଶ୍ୟ

[ ରଘୁନାଥପୁର ପଲ୍ଲୀ ଗାଁ, ଦେବବାସୀ ବସିଲ ଘର ବାଡ଼ ପଟର ଦୃଶ୍ୟ । ବାଡ଼ପଟେ ନାନା ଗଛ ବୃଛ, ଫୁଲ ଲତା, ଘୋର ଅନ୍ଧାର ରାତି, ତା ବାଡରେ ପଶିଛନ୍ତି ଜଣେ ଭୁଲଜଣ, ଆଉ ଲୁବାନ ଖାଁ ଜମାଦାର— ]

ଲୁବାନଖାଁ—(ଗୃହଅଡ଼କୁ ଲକ୍ଷ୍ୟ କରି) ଆରେ ଏଇଠ ଗଛ ଯୋଡିବାକୁ ହେବ ।)......

୧ମ ବ୍ୟକ୍ତି — ବାବୁ, କେତେଠା ଗଛ,

କୁର୍ବାନ ଖାଁ — ଆରେ ବାଙ୍ଗଡ଼ାଯାକ ପଡ଼ୁ, ପାଲଗଦା ଠିଆ ହୋଇଛି, ଯେଉଁଠି ଯାହା ଲଗେଇ ଦିଅ···········

୨ୟ ବ୍ୟକ୍ତି — (ମାଟି ଖୋଳି ଗାତ କରିବା)

ପ୍ରଥମ ବ୍ୟକ୍ତି — ଖାଲି ଗଛ ଲଗାଇବା ନା ଆଉ କଣ କରିବା ବାବୁ···

କୁର୍ବାନ୍‌ଖାଁ — ଆରେ ବେଇମାନ, କେତେ ଫଇଁଠାଉଛୁ ? ଗଛ ତ ଲଗିବ, ଆଉ କଣ ତୁ ଝୁମ୍ପା ଖଞ୍ଜି ଦେବୁ ।

ପ୍ରଥମ ବ୍ୟକ୍ତି — (ଦ୍ୱିତୀୟ ବ୍ୟକ୍ତିକୁ) ଆରେ ପାଟି କରନା —

୨ୟ ବ୍ୟକ୍ତି — କାହିଁକି ? କିଏ ଅଛି କି ?

କୁର୍ବାନ ଖାଁ — ଆରେ ଏ ବଗଲ ଦେର । କାନ୍ଥର ମଧ କାନ ଅଛି । ତୁ କଣ ଜାଣିଛୁ । ଏହି ନିମକହାରାମର ପୁଅ, କଂଗ୍ରେସ କରୁଛି ।

ପ୍ରଥମବ୍ୟକ୍ତି — ଆହେ, କଂଗରସ ଫଂଗରସ କରୁଛି କରୁ । ରସିକିଆ ନାଗିବ ଯେ — ପୁଅଠ

୨ୟ ବ୍ୟକ୍ତି — (ଦୁଇ ଗୁଣ୍ଡିଆ ଗଛ ପୋତି ସାରି) ଆଉ କଣ ପୋତା ହେବ ?

କୁର୍ବାନ ଖାଁ — ନାହିଁ, ଆଉ ଅନ୍ୟ କାମ ଅଛି·········ଦେଖେ ଦାମା ତୁମେ ଦୁ'ଜଣ ଏହି ପାଖ ବଣକୁ ଯାଅ । ଗୁଡ଼ାଏ କାଠ କୋଇଲା ଗଛ ମୂଳେ ପଡ଼ିଛି । ତାକୁ ଜଲଦି ଜଲଦି ଆଣି ଏଠି ପକାଇ ଦିଅ । ପାଲଟଦା ଟେକି ଲୁଚେଇ ଦେବ । ଯେମିତି କେହି ଜାଣି ପାରିବେ ନାହିଁ ।

୨ୟ ବ୍ୟକ୍ତି — ବାବୁ, କିଏ କଣ କହିବ ? (କାନ କୁଣ୍ଡାଇ କୁଣ୍ଡାଇ)

କୁର୍ବାନ ଖାଁ — କଣ କହିବେ, କିଏ କଣ କହିବ । ଆରେ କୁର୍ବାନ ଖାଁ ଜମାଦାର ଫଗୁମହାନ୍ତି ଦିଆନକୁ, ଶ୍ୟାମବନ୍ଧୁ ମହାନ୍ତି ଦାରୋଗା । ଶ୍ୟାମବନ୍ଧୁ ମହାନ୍ତି ଦାରୋଗାଙ୍କ କୁର୍ବାନ ଖାଁ ଜମାଦାର । ଆରେ କୁର୍ବାନ ଖାଁ ଜମାଦାରକୁ ଆଉ ସବୁ ଲଗାଲଗି·········

୨ୟ ବ୍ୟକ୍ତି — ଆଜ୍ଞା ଚଉଦକୋଶ ରଣପୁର ମଣ୍ଡଳେ । ଟିକିଏ ଏଣ୍ଡୁଲେ ନଦେବ ଟଣ୍ଡ ହେବ । ଏ ପୃଥୀ ସହଜ ପୃଥୀ ନୁହେଁ । ଏ ଲୋକଗୁଡ଼ାକ ମେଳିଆ — ଜାଣିଥାନ୍ତୁ ହଜୁର ଏଗୁଡ଼ାକ ମେଳିଆ —

କୁର୍ବାନ ଖାଁ — ଆରେ କୁର୍ବାନ ଖାଁକୁ ତୁ ପାଠ ପଢ଼ାଉଛୁ । କେତେ ହାକିମ ହୁକୁମାଙ୍କୁ କୁର୍ବାନ ଖାଁ ଦେଖିଛି ।

୨ୟ ବ୍ୟକ୍ତି — ଆଜ୍ଞା, ଖାସମହାଲରୁ ଏ ଲୋକ ବଦଳି ପଡ଼ିବେ ।

ପ୍ରଥମ ବ୍ୟକ୍ତି — ଆରେ ଜମାଦାର ବାବୁଥିଲେ ସବୁ ଅଛି । ହାକିମ ନା ହାକିମ, ସେତ ଆମପର ନୁହନ୍ତି ।

୨ୟ ବ୍ୟକ୍ତି — ଆରେ କିଏ ଧରିବ ଯାଦ ।

କୁର୍ବାନଖାଁ — ତୁ କହୁଛୁ କୁର୍ବାନ ଖାଁ — ଜମାଦାର ସାହେବଙ୍କର ହୁକୁମ ।

୧ମ ବ୍ୟକ୍ତି — ନାଇଁ ଏକଥା କାହାକୁ କହିବାକୁ ହେବ ନାହିଁ ।

କୁର୍ବାନ ଖାଁ — ସେ କଥା କଣ ସେ ବୁଝୁଛି । କିରେ କୁର୍ବାନ ଖାଁର କେତେ ମହିମା, ତା ନାଁ ଶୁଣିଲେ···

ପ୍ରଥମ ବ୍ୟକ୍ତି — ଗର୍ଭିଣୀ ଗାଈ ବାଛ ଛାଡ଼ିବ ।

୨ୟ ବ୍ୟକ୍ତି — ବାବୁ ମୁଁ କଣ କହୁଛି, ତମେ ବଡ଼ ବଡ଼ଙ୍କୁ ସବୁ ପାର । ଆମେତ ମଳି ମୁଣ୍ଡିଆ ।

କୁର୍ବାନଖାଁ — କିରେ କୁର୍ବାନଖାଁ ଥିଲାତକ, ତମକୁ କଥା କହିବାକୁ କାହାର ସାହସ ଅଛି ।

୧ମ ବ୍ୟକ୍ତି — ଠିକ୍ କଥା, କୁର୍ବାନ ଭାଇଥିଲେ —

୨ୟ ବ୍ୟକ୍ତି — ଜାନୁ ଭାଇ, ଅସମୟରେ ଭାଇଙ୍କୁ··· ତାଙ୍କ ରୂପ ହଳଦୀ ପାଣିରେ ଦେଖିବାକୁ ମିଳିବନି ସେ··· ।

କୁର୍ବାନ ଖାଁ — ଆରେ ହେ । କୁର୍ବାନ ଖାଁ ରଜାଙ୍କୁ ତ ଜବାବ ଦେଇଛି, ଦିଆନ, ଦାରୋଗାତ ଦେଖିଲେ ଖୁସି —
ପୁଣି କୁର୍ବାନ ଥାଉଁ ଥାଉଁ ତମକୁ କିଏ ମାରିବ, ଧମକାଇବ ।
ଲଣ୍ଡପୁରିଆ ? ଛେଚିରେ କହୁଁଚ ଖୋଲପା ବାନ୍ଧି ସଜ ହୁଅନ୍ତୁ ।
ମାଡ଼ ଖାଇଲେ ଠିକଣା ହେବେ ଯେ ।

୧ମ ବ୍ୟକ୍ତି — ଏମିତି କ'ଣ ସମୟ ଯିବ ? ରାତି ପାହିଲେ ପୁଣି ସାନଗଡ଼ ହାଟ ଅସୁଲକୁ ଯିବାକୁ ହେବଟି ।

କୁର୍ବାନଖାଁ — ଯାଅ, ଚଞ୍ଚଳ ଯାଅ । କାଠ ଆଣି ପକାଇ ସାରିଲେ, ସବୁ ଥାନାକୁ ଫେରିଯିବା ।

(ପ୍ରଥମ ଓ ଦ୍ୱିତୀୟ ବ୍ୟକ୍ତି ଫେରିଯିବା, କୁର୍ବାନ ବସି ପିକା ଟାଣିବା)

କୁର୍ବାନଖାଁ—(ସ୍ୱଗତ) ଏଇଥର ବସନ୍ତ ପୁଅ ଉତ୍ତମ ମଧ୍ୟମ କଣ ପାଇଯିବ, ଏଟା ଖୋଦ୍ କୁର୍ବାନର କସମଛ ହେ ।

(ଏହି ସମୟରେ କାଠ ଆଣି ଦୁଇଜଣ ଯାକ ରଖିଲେ । କାଠଟାକୁ ମାଟି ଖୋଳି ସେହି ବାଡ଼ରେ ପୋତିଦେଲେ । ବହୁ ସାବଧାନତା ସହ )

କୁର୍ବାନ ଖାଁ—ସବୁ ସରିଲା ?

୧ମ ବ୍ୟକ୍ତି—କାହିଁକି ସରିବ ?

୨ୟ ବ୍ୟକ୍ତି—ଆହୁରି ପିଅଶାଳ କାଠ ଦି'ଟା ପଡ଼ିଛି ।

୧ମ ବ୍ୟକ୍ତି—କଞ୍ଚାକାଠ ଆଣିଲେ ଭଲ ହୁଅନ୍ତା ।

କୁର୍ବାନ—ଅରେ ସେଇ କଞ୍ଚା କାଠ କଥା ମୁଁ କହୁଛି । କଞ୍ଚାକାଠ ହେଲେ କଞ୍ଚା ପଇସା ଝଡ଼ିବ । କଞ୍ଚା ରକ୍ତ ଶୀତଳ ହୋଇଯିବ । ବସନ୍ତ ବୁଢ଼ାର ମୁଣ୍ଡ ଫାଟିଯିବ । ପୁଅ ମାମୁଁ ଘରକୁ ଯିବ ସିଧା ସିଧା ।

ପ୍ରଥମ ବ୍ୟକ୍ତି—ଏଥରକ କଞ୍ଚାକାଠ ତକ ଆଣିବୁ ?

କୁର୍ବାନ ଖାଁ—ଖାଲି କଞ୍ଚା କାଠ ଆଣ, ଗୋଟାଏ ଦି'ଟା କାଠ ମଧ୍ୟ ଆଉ ସାନ୍ଧ ଷଡ଼ଙ୍ଗୀଙ୍କ ବାଡ଼ରେ ପକାଇ ଦେବ । ଯେପରିକି ଷଡ଼ଙ୍ଗୀ ମଧ୍ୟ ଏଥର ମାମୁଁଘର ଯିବ...

୨ୟ ବ୍ୟକ୍ତି—ଏଇଲେ କେତେ ଘଡି ହେବ (ଆକାଶକୁ ଚାହିଁ)

କୁର୍ବାନଖାଁ—(ହାତ ଘଡ଼ିକୁ ଚାହିଁ) ଅରେ ସାଢ଼େ ଦି'ଟା ହେଲା । ବେଗି ବେଗି କାମ ଶେଷ କର । ଏଇଲେ ଘଡି ପାହିଯିବ । ଦାରୋଗା ବାବୁଙ୍କର ମର୍ଜି—ପୁଣି ଏଠା କାମ ସରିଲେ ଆଉ ଦେଉଁ ଗାଁକୁ ଯିବାକୁ ପଡ଼ିବ ।

୧ମ ବ୍ୟକ୍ତି—ଚାଲ, ଚାଲ, ବେଗି ବେଗି କାମ ଶେଷ ହେଲେ ଯିବା ।

୨ୟ ବ୍ୟକ୍ତି (ପିକାଟାଏ କୁର୍ବାନଠାରୁ ନେଇ ଟାଣିବା) ଗାଁଟା ସାରାକୁ ମିଳାଇ ସବୁ ଅମାନ୍ୟ କାମ ଏହି ବସନ୍ତ ଘର କରୁଛି । ଆଜି ଏଠି, କାଲି ସେଠି,

କମଳା—[ଗଛ ତଳ ବାଡ଼ିରେ କେତେ ଫୁଲ ଝଡ଼ି ପଡ଼ିଛି । କମଳା
ଫୁଲ ଗୋଠାଇ ଗୋଠାଇ ଗୁଣୁ ଗୁଣୁ କରି ଗୀତଟିଏ ଗାଉଥିଲା ।]

ମନ ପବନରେ, କେତେ ଫୁଲ ଯାଏ ଛୁଇଁ,
ମହକା ବଉଳ ଅମ୍ବ ଗଛ ମେନ୍ଧି ଛାଇ
ମଲାଗୁଣୀ ନଈ ଛୁଇ ଛୁଇଁ
ଯେବେ ଯାଉ ଆସେ ଧାଇଁ ଧାଇଁ,
ସିନ୍ଦୁରି ଫାଟିଲା ଫୁଲ ମହକିଲା
ଚମକିଲା ଭୁର ଗଡ଼ଜାତ ଭୂଇଁ,
ଏ ଦେଶରେ ବଗୁର ନାହିଁ କେଉଁ,
ଘର କରିଥିଲେ ଥରେ ଛାଡ଼ିଲେ ଯିବୁ କେ।

(ଏପରି ସମୟରେ ଛୋଟ ଛୋଟ ପିଲା ଦୁଇଟି ଆସିଲେ। ଫୁଲ
ତଳୁ ଗୋଠାଇଲେ)

କମଳା—କିଏଲୋ: ଟୁନୁ, ଫୁଲ କଣ କରିବୁ ।

ଟୁନୁ—ଅପା, ଆଜି ଯେ ଖୁଦୁରୁକୁଣୀ ଓଷା । ତୁମେ କଣ ଉପାସ କରିବ ।

କମଳା—ଆମ ମଫସଲ ଗାଁରେ କେତେ ଓପାସ । ଆମେ ତ
ମଫସଲିଆ ଲୋକ ।]

ଟୁନୁ—ହଁ ଲୋ ଅପା, ଖୁଦୁରୁକୁଣୀ ଉପାସଟା କଣ ।

କମଳା—ଆରେ ତୁ କଣ ଖୁଦୁରୁକୁଣୀ ଓପାସ କଥା ଜାଣିନୁ ।
ଖୁଦୁରୁକୁଣୀ ଓପାସ ଆମ ଏ ରାଜ୍ୟର କୋଣ ମୁଲକରେ କିଏ
ନ କରି ନାହିଁ । ସବୁ ଗାଁରେ ଏହି ଓପାସ । ସଞ୍ଜରେ ତୁ
ଆସିଲେ, ମୁଁ ଏହି ଓପାସ କଥା କହିବି ।

ଟୁନୁ—(ଫୁଲ ଗୋଠାଇ ଗୋଠାଇ) ନାହିଁମ ଅପା, ମୁଁ ଏଇଠି ଫୁଲ
ମାଳ ଗୁନ୍ଥୁଛି, ତମେ କଥାଟି କୁହ ।

କମଳା—ନାଇଁଲୋ, ଟୁନୁ, ବେଳ ନାହିଁ । ଭାଉ ଆଜି ଘାଟକୁ
ଯିବେ । ଭାତ ରନ୍ଧା ହେବ । ଧାନ କାଲିଠୁଁ ମଡ଼ା
ଶୁଖିଲେ ଧାନ କୁଟା ହେବ । ତୁ ଏଇଠି ବସି ଫୁଲ ଗୁନ୍ଥୁ
ମୁଁ ଆସେ...(କମଳା ଘର ଭିତରକୁ ଗଲା )

(ଲୁନୁ ବସି ଏ ରୁମାଲ ଖୁନ୍ଥୁଥା)
(କମଳା ଧାନ ଶୁଖା ପେଡ଼ିଟାଏ ଆଣି ଆସିଲା) କମଳା ପିଡ଼ି ପକାଇ ଦେଲା। ଧାନ ଆଣି ପିଡ଼ିରେ ଦେଲେଇ, ଗୋଡ଼ରେ ଘାଣ୍ଟି ଦେଲା।

କମଳା—ଲୁନୁଲୋ, ଆଜି ସଂଧ୍ୟାବେଳକୁ ଆମ ଘରକୁ ଆସିଲେ ହୁଡୁକୁଣୀ କଥା ଶୁଣିବୁ—

ଲୁନୁ—କାହିଁକି ଅପା, ଏଇଲେ କହୁନ...

କମଳା—ନୂଆବୋହୂ, ପଛ ଏଇଲେ ପାଟି କରିବେ। ଭାଇ ଏବେଲେ ନଇରୁ ଗାଧୋଇ ଆସିଲେ ନୂଆବୋହୂ ସଭାକୁ ଯିବେ। କାହା ବୋଉ ଆଜି କମଳେଶ୍ୱର ଦର୍ଶନ କରିକି ଯିବେ।

ଲୁନୁ—ତମେ ଅପା, ଅଳ୍ପେକ କଥାଟା କହି ଦେଉନ।

କମଳା—ଆରେ, ଏ ହୁଡୁକୁଣୀ କଥା କଣ ସାମାନ୍ୟ କଥା। ଏଥିରେ କେତେ ଦର୍ଶ ଦେବତା, ସାଧବଙ୍କର ବୋଇତ, ସାଧବଙ୍କର ବୋହୂ, ଏମିତି କେତେ ପୁରାଣ କୋରାଣ ପୋଥି ଲେଖା ହୋଇଛି। କେତେ ପୁରୁଷ ହେଲା ଏହି ଉପାସ ଓଷା ଆମ ଗାଁରେ ଚଳି ଆସୁଛି। ସେ କଣ ଆଜିକାଲିକାର କଥା—

ଲୁନୁ—କମଳା ଅପା, ମୁଁ ଯାଉଛି। କିନ୍ତୁ ସଂଧ୍ୟାବେଳକୁ ତମ ଘରକୁ ଆସିବି। ତମେ ନିଶ୍ଚୟ ଓଷା କଥା କହିବ।

କମଳା—ହଁ ଲୋ, ତୁ ଆସିବୁ। ମୁଁ କହିବି। ଆମ ନୂଆବୋହୂ ବି କେତେ ଓଷା କଥା ଜାଣି।

ଲୁନୁ—ନୂଆବୋହୂ କଣ କରୁଛନ୍ତି

କମଳା—ନୂଆବୋହୂ, ଲୁଗା ହକାଳି, ଚୁଳି ଲଗାଉଥିବେ।

ଲୁନୁ—ଅପା, ତମ ଭାଇ କେଉଁ ସଭାକୁ ଯିବେ କି।

କମଳା—କହୁବୁ ନାହିଁ ଲୁନୁ କାହାକୁ।

ଲୁନୁ—ଆମ ମାଷ୍ଟ୍ରେ ତ ସଭାକୁ ଯିବେ କହୁଥିଲେ।

କମଳା—ହଁ, ହଁ, ସେହି ସଭା, ୧୪ କୋଶ ଗାଁର ପ୍ରଜା ଏକଯୁଟ ହେଉଛନ୍ତି । ଗଲା ମାସରେ ଗଣ୍ଡି ବେଡ଼ରେ ସଭା ହୋଇଥିଲା । ବହୁତ ଲୋକ ଜମା ହୋଇଥିଲେ ।

ଭୁନୁ—ଆମ ଗାଁକୁ ନାଲି ପଗଡ଼ିଆ କାହିଁକି ଆସୁଛନ୍ତି ।

କମଳା—ସେଇ କଥା ଲୋ ଭୁନୁ । ରଜାଙ୍କର ଏମିତି ଖାଲି ଲୋକଙ୍କୁ ଟୋକା ମାଣ୍ଡି କରି ରଖିଛନ୍ତି । ଲୋକେ ମନ କଥା କହି ପାରିବେ ନାହିଁ । ଖଜଣା ଦେବେ, ବେଠି ବେଗାରି କରିବେ । ଗାଳି ସହିବେ, ମାଡ଼ ସହିବେ । ଦଅନ, ଦାରୁଗା ଆମ ଲୋକଙ୍କୁ ବାଡ଼େଇ ପିଟି ଶାସନ କରିବେ ।

ଭୁନୁ—କାହିଁକି ?

କମଳା—ତୁ ସବୁ ବଡ଼ହେଲେ, ଜାଣିବୁ ।

ଭୁନୁ—ସେଦିନ କାହିଁକି ତୋର ସାହିର ନରି ଭାଇଙ୍କୁ ପୁଲିସ ବାନ୍ଧି କରି ନେଇଗଲା । ଆଉ ଧନେ ଲୋକଙ୍କୁ ବାଡ଼େଇଲା । କାହିଁକି ଅପା ଆମ ଗାଁରେ ଲୋକେ ଏମିତି ସବୁ ସହନ୍ତି ।

କମଳା—ଆରେ ଆମର ପରା ସହିବା ପାଇଁ ଜନ୍ମ ବୋଲି ଦଅନ ଦାରୁଗା କହନ୍ତି ।

ଭୁନୁ—ରଜା ଘର ଆମ ପାଇଁ ତ କିଛି କରୁନାହାନ୍ତି ।

କମଳା—ରଜା କାହିଁକି କରିବେ—ରଜା ପରା ଆମର ଦଅଁ, ଦେବତା ।

ଭୁନୁ—ତେବେ ଆମେ କଣ ତାଙ୍କ ପୂଜା କରିବା ?

କମଳା—ହିଁ, ହିଁ, ପୂଜା କରିବା କାହିଁକି ? ଏଗୁଡ଼ାକ ପରା ମଣିଷଖିଆ ବାଘ । ଆମର ଖାଇବେ, ଆମ ସାଙ୍ଗ ଭାଇଙ୍କୁ ବାନ୍ଧି ମାରିବେ । ଆମ ଗାଁରେ ଆମର ଭାଗ ନାହିଁ । ଦଅନ ଦାରୁଗା ଆମ ସମ୍ପତ୍ତି ଖାଇଯିବେ ।

ଭୁନୁ—ଅପାଲୋ, ମୋତେ ତ ଭାରି ଭୟ ଲାଗୁଛି ।

କମଳା—କାହିଁକି ମ, ଅମେପରା ନେଡ଼ି ଜନ୍ମ ପାଇଛେ । ଆମର କଣ ଅଧିକାର ନାହିଁ ? ଆମର କଣ ଜନ୍ମ ଖାଲି ଡରି ଡରି ମରିବା

ପାଇଁ । ଆମର ଭାଇ ବାପା କହୁଥିଲେ, ରଜା ପ୍ରଜାମାନଙ୍କୁ ଯଦି ଦୁଃଖ ଦିଏ, ତେବେ ସେହି ଲୋକକୁଳରେ କଳଙ୍କ ଲାଗେ । ତାର ସର୍ବନାଶ ହୁଏ । ବଂଶରେ ପାଣି ଦେବାକୁ କେହି ରହନ୍ତି ନାହିଁ ।

ରୁକ୍ନୁ—ତାଙ୍କୁ ରଜା କିଏ କଲା ?

କମଳା—ରଜା କିଏ କଲା ? କାହିଁକି, ଆମେ ସବୁ ।

ରୁକ୍ନୁ—ତାଙ୍କର ହାତ ଗୋଡ଼ ସବୁ କେମିତି ?

କମଳା—(ହସି ହସି) ପାଗଳୀଟା କଲେ—

ରୁକ୍ନୁ—ନାଇଁ ଅପା, ମାଷ୍ଟ୍ରେ କହୁଥିଲେ, ରଜା ସବୁଠୁ ବଡ଼ଲୋକ ।

ରୁକ୍ନୁ—ହଁ, ହଁ, ରଜା ସବୁଠୁ ବଡ଼ । ଯେତେବେଳେ ରଜା ସିନା ପ୍ରଜାଙ୍କର ଭଲ କରନ୍ତି ସେତେବେଳେ ବଡ଼, ନହେଲେ ରଜା କିଏ, ପ୍ରଜା କିଏ । ଦଅନ ଦାଣ୍ଡୁଆଡ଼ ସବୁ ରୁଣ୍ଡେଇ ପୁରେଇ ଶୋଷି ବଡ଼ହେଲେ, ମୂଲକ ଉଜୁଡ଼ିଲା ଚାଲିଲା ।

ରୁକ୍ନୁ—ଅପା ତମେ ଦଅନଙ୍କୁ ଦେଖିଛ ?

କମଳା—ନାଇଁଲୋ ଦଅନଙ୍କୁ କାହିଁକି ଦେଖିବା ।

ରୁକ୍ନୁ—ସେ କେମିତି ଲୋକ ?

କମଳା—ନାଇଁଲୋ ପାଗଳୀ, ସେ ଆମ ଭିତରୁ ଜଣେ । ମାତ୍ର ଲୋକଙ୍କୁ ବାଣର ପଶୁ ଭଳି ବାନ୍ଧି ରଖିଛନ୍ତି ।

---

## ୪ର୍ଥ ଦୃଶ୍ୟ

[ରଣପୁର ଗଡ଼, ହାଜତ ଘରର ଦୃଶ୍ୟ । ଆଠ ଜଣ ବନ୍ଦୀହୋଇ ଛନ୍ତି । ଅନ୍ଧାରକୁ ଅନ୍ଧାର ଦେଖାଯାଏ । ହାଜତ ଘର ବାହାରେ ଗୋଟିଏ ଗଛ ଦେହରେ ବନ୍ଧା ହୋଇଛନ୍ତି ବୃଦ୍ଧ ଯୋଗନାମୀ ବଗଲା । ଚୌକି ଟେବୁଲ ପଡ଼ିଛି । ବନ୍ଦୀଙ୍କୁ ଗୁଡ଼ିଏ ମଲା ହୋଇଛି । ସିନା ଉଠିଲା ବେଳକୁ ଦେଖା ଗଲା ଜୀବନ ଆଁ ଗୁରୁ ଅଧାତ ଭଳି ଯୋଗବାସୀ ବଗଲାଙ୍କୁ । ]

ଦାରୋଗା—(ଅଣ୍ଟିରେ)

(ଅଘାତ ପରେ ଅଘାତ,...ପିଠ ପିଠ ବସୁଛି ମାଡ)

(କ୍ଷେତ୍ରବାସୀ—ଯନ୍ତ୍ରଣାରେ କେବଳ କେବଳ ହାହାକାର କରୁଛି)

ଦାରୋଗା—ଗଞ୍ଜେଇ ଗଛ କଣ ବାଡିରୁ ବାହାରିଲା ?

କ୍ଷେତ୍ରବାସୀ—ଆଜ୍ଞା ମୁଁ କହିପାରିବ ନାହିଁ । ମୁଁ ଜାଣିନି—

ଦାରୋଗା—କୁର୍ବାନ ଖାଁ, ଚଲାଓ...

କୁର୍ବାନ ଖାଁ—(ଚାବୁକ ଦେଉଥାଏ, ଏହାପରେ ପ୍ରତି ବନ୍ଦୀଙ୍କ ପିଠିରେ ଚାବୁକ ମାଡ)

୧ମ ବନ୍ଦୀ—ଆଜ୍ଞା, ମୋ ଟଙ୍କା ଡାକଘରୁ ମାଷ୍ଟର ବାବୁ ନେଇଗଲେ ।

୨ୟ ବନ୍ଦୀ—ଆଜ୍ଞା ମୋର ଦୁଇବାଟି ସମ୍ପତ୍ତି ସରକାର...

ଦାରୋଗା—ଚଲାଓ କୁର୍ବାନ୍ ଖାଁ...

କୁର୍ବାନ ଖାଁ—(ବେଶ କ୍ଲାନ୍ତ ହେଲାପରି ଜଣା ପଡ଼ୁଥିଲା) ଚାବୁକ ଉଠାଇ ସବୁ ବନ୍ଦୀଙ୍କୁ ପିଟିଦେଇ ଗଲା ।

ଦାରୋଗା—କି ବୁଝି ବସିଲ, ତଥାପି ତୋର...

ବସନ୍ତ—(ଲୁହ ପୋଛି ପୋଛି) ମୋ ବାଡ଼ିରେ ଗଞ୍ଜେଇ ଗଛ ନଥିଲା । ମୋର ସାତ ପୁରୁଷରୁ କେହି ଗଞ୍ଜେଇ ଖାଆନ୍ତି ନାହିଁ ବାବୁ ।

ଅନ୍ୟବନ୍ଦୀ—ମୋତେ ଛାଡ଼ି ଦିଅ ବାବୁ, ମୁଁ ନଦେଖିଛି...

ଦାରୋଗା—କୁର୍ବାନ ଖାଁ ଚଲାଓ— (ଏହି ସମୟରେ ଜଣେ ମରିଚ ଧୂଆଁ ଧରି ପହଞ୍ଚିଲା । ସେହି ଦେଇ ମରିଚ ଧୂଆଁ ଦେବାପାଇଁ)

(କୁର୍ବାନ ଖାଁ—ସମସ୍ତଙ୍କ ନାକପ୍ରତି ଲକ୍ଷ କରି, କନେଷ୍ଟବଲଙ୍କୁ ହୁକୁମ ଦେବା )

(କନେଷ୍ଟବଲ—ଧୂଆଁ ଦେବା, ବନ୍ଦୀମାନେ ଧୂଆଁରେ ଅଣନିଃଶ୍ୱାସୀ ହୋଇ ଯାଉଥିଲେ)

ଦାରୋଗା—କୁର୍ବାନ ଖାଁ, ଚଲାଓ ଚାବୁକ (ଲଙ୍କାମରିଚ ଧୂଆଁ ମଧ୍ୟରେ ଚାବୁକ ଚାଲିଲା) କହ ଶାଳେ, ହାଁ, ଗାଁଆରେ କିଏ ସବୁ ମେଳ ବାନ୍ଧୁଛି । କହ ଶାଳେ, ନହେଲେ କୋଉ ବାପା ପିଠିରେ ଛଡ଼ିବ ।

(କିଏ ଗୋଟିଏ ବନ୍ଦୀ କହୁଥିଲା, ମରିଗଲି, ମରିଗଲି ବାବୁ, କହୁଛି, କହୁଛି) ବୃନ୍ଦାବନ ରାମ ଆମକୁ ଡାକୁଥିଲା ।

ଦାରୋଗା—କୁର୍ବାନ ଖାଁ, ମୁଁ ଦେଖୁଛି, ତୁ କ୍ଳାନ୍ତ ହୋଇ ପଡ଼ୁଛୁ। ଡକାଅ ଚୌକିଦାରକୁ।

କୁର୍ବାନ ଖାଁ—କିଏ ଅଛରେ, ଚୌକିଦାର (ସଙ୍ଗେ ସଙ୍ଗେ ଦୁଇଜଣ ଚୌକିଦାରର ପ୍ରବେଶ)

(କୁର୍ବାନ ଖାଁ—ଆଖିଠାରି ଦେବା, ଚୌକିଦାର ଦୁଇଜଣ ବେତରେ ପ୍ରହାର କରିବା)

(ପ୍ରତି ବନ୍ଦୀଙ୍କ ନିକଟକୁ ଯାଇ, ଛାତକୁ ଦେଖାଇ ପ୍ରହାର ଦେବା। କାହାକୁ ଉଡ଼ଆଣି ପିଙ୍ଗିଦେବା। ତଳେ ପଡ଼ିଯିବାରୁ ଛାତ ଉପରେ ଗୁଳିଯିବା। )

କୁର୍ବାନ ଖାଁ—ଆରେ ବଗଲ ବୁଢ଼ା କହଦେଅ, ତମ ବାଡ଼ିକୁ କିଏ କାଠ ଗଡ଼ିଛଇ ଗଛ ଜବାବ ହୋଇଛି।

ବଗଲ—ଜମାଦାର ବାବୁ, ପୂର୍ଣ୍ଣ ମିଥ୍ୟା କଥା। ଏ ସବୁ ପୂର୍ଣ୍ଣ ମିଥ୍ୟା। (ତାଙ୍କ ମୁହଁକୁ ଗୁହିଁ କୁର୍ବାନ ଖାଁ ଗୁରୁକ ଦେବା)

ଦାରୋଗା—ଦେଖ କୁର୍ବାନ ଖାଁ, ଏମାନଙ୍କୁ ପୁଣି ଗାରଦଖାନାରେ ହାତ ଗୋଡ଼ରେ ବେଡ଼ିପକାଇ ପୁରାଅ।

କୁର୍ବାନ ଖାଁ—ଜୋ ଅଜ୍ଞା—

ଦାରୋଗା—ଏମାନଙ୍କୁ, ରାତିରେ ମାରିବାକୁ ଦଅଯିବ ନାହିଁ।

କୁର୍ବାନ ଖାଁ—ଜୋ ହୁଜୁର।

ଦାରୋଗା—ରାତି ପାହିଲେ, ଏମାନଙ୍କୁ ବାଡ଼ ଦାଣ୍ଡରେ ହାତ ଗୋଡ଼ରେ ବେଡ଼ି ଦେଇ ଯୋହାରି ଯୋହାରି କଟକରେ ହାଜର କରାଅ।

କୁର୍ବାନଖାଁ—ହଜୁର। (ବନ୍ଦୀମାନେ ସେହିପରି ଠିଆ ହୋଇଛନ୍ତି, ଷୋହଳବାସୀ ବଗଲ ଗଛ ଦେହରେ ବନ୍ଧା ହୋଇଥାଏ)

(ଦାରୋଗାଙ୍କର ପ୍ରସ୍ଥାନ—)

(କୁର୍ବାନ ଖାଁ ଜେଲରେ ପୁଣି ସମସ୍ତଙ୍କୁ ପୁରାଇବା।)

ପଟ୍ଟପତନ

---

ଗାଇଜରେ ଘର କରି ତୁ ପୁଣି ପ୍ରଜାଙ୍କ ହିତ ପାଇଁ ବଢେଇ ଦେଇଛୁ । ଶଳାକୁ ଫାଶୀ ଗଛରେ ଦନଦ୍ଧ ପଟକ୍ଷ ଦେବ । ସେଇଠି ଶଳା ଙ୍ଗରଚ୍ଚ କରୁଥିବୁ ।

ଦାରୋଗା—ଆଜ୍ଞା, ଏ ଶଳା ବୁଢ଼ା ଗୁଣ ବୁଝିଲେଣି ।

ଦେଓ୍ୱାନ—(ରୋଷ କାଷାୟିତ ନେତ୍ରରେ ଗୃଦ୍ଧି) କଣ ?

ଦାରୋଗା—ଆଜ୍ଞା, ମୋଗଲବନ୍ଦୀରୁ ଗାନ୍ଧି ଆସିଥିଲେ ଯେ, ରଣପୁର ମୁଲକରୁ ଏ ଫିଟି ଯାଇଥିଲା ସେ ପର୍ଯ୍ୟନ୍ତ ।

ପୋଷ୍ଟମାଷ୍ଟର—'ଡେଲିଗେଟ୍'ରୁ ।

ଦାରୋଗା—ହଁ ଆଜ୍ଞା, ଜଗନ୍ନାଥ ଦେଖିବା ପାଇଁ ନାଇଁ, ଡେଲିଗେଟରେ କଂଗ୍ରେସିଅଙ୍କ ସହିତ ହାଜର...

ଦେଓ୍ୱାନ—ଆଃ ତାକୁ ଠିକ୍ ଦିଅ । ମାମୁଁ ଘରେ କିଛି ଦିନ ଘଣା ବୁଲାଇଲେ ସିଧା ସଳଖ ହୋଇଯିବ । ଦେଖ, ଇତାନ ପାଢି, ଦାରୋଗା, ଏମାନଙ୍କ ଆଙ୍ଗୁଠି ସବୁ କାଟି ଦିଅ...

ବଗଲି—ହିଁ ଆଜ୍ଞା, ନିଅ, ନିଅ କରି ପୁଣି ଆଙ୍ଗୁଠି କଅଁଳର— ଆପଣଙ୍କ ଶାସନ ଚକି ତଳେ ନିଆଁ ଧରିବାକୁ ।

ପୋଷ୍ଟମାଷ୍ଟର—କିଏର ମୂର୍ଖ ବକ୍ରୀ ଚେଲା ।

ଦାରୋଗା—ଶଳା, ଏଠା କରେସ୍ତ ବୋଲି ମାଲୁମ ନାହିଁ କି ।

ବଗଲି—ଏହି ବଗଲୀକୁ ଚେଲେ କରେସ୍ତ ଦେଖିଛୁ ।

କୁର୍ବାନ ଖାଁ—ଚୁପ୍ କର ।

ଦାରୋଗା—ବୁଢ଼ା ଗାଞ୍ଜିଆ ଗନ୍ଧ ଲଗାଇ, ତେଜେଇ ଖାଇଛି କି, ସେଥି ପାଇଁ ଏ ଗୁଳମାରି ।

କୁର୍ବାନ ଖାଁ—ନାହିଁ ଆଜ୍ଞା, ବୁଢ଼ା ଅଫିମ ଖାଇଛି ।

ଦେଓ୍ୱାନ—ଶୁଣ ଦାରୋଗା, ଏମାନଙ୍କର ବିଚାର ଆଉ କିଛି ହେବ ନାହିଁ । ଏମାନେ ସମସ୍ତେ ଆଇନ ଅମାନ୍ୟ, ରାଜାଙ୍କୁ ସମାଲୋଚନା କରିଥିବାରୁ ସ୍କେଟ୍ ଏମାନଙ୍କୁ ପହିଲା ନମ୍ବର ଦାଗୀ ଶ୍ରେଣୀରେ ଭୁକ୍ତ କରି ବିନା ବିଚାରରେ ବନ୍ଦୀ କରି ରଖିଲ ।

ଦାରୋଗା—ଯେ ହଜୁର ।

ଦେଓ୍ୟାନ—ଏମାନଙ୍କୁ ଏଠାରୁ ହାଜତକୁ ନେଇଯାଅ । ଶଳାଙ୍କୁ ଶୁଖାଇ ଶୁଖାଇ ମାର, କୁର୍ବାନ........

(କୁର୍ବାନ ବେତ୍ରାଘାତ କରି ଘେନିଯିବା)

ବସ୍ତଲ—(ପ୍ରସ୍ଥାନ ବେଳେ) ହଜୁର ଧର୍ମାବତାର, ପ୍ରଜାଙ୍କର ମା, ବାପ ହଜୁର ବିଚାର କରନ୍ତୁ ।

ପୋଷ୍ଟମାଷ୍ଟର—ଅରେ ଶଳା, ପୁଣି କଣ ଝାଣପଣ କରୁଛୁ ।

ଦେଓ୍ୟାନ—ନାହିଁ ଦାରୋଗା, ଏମାନଙ୍କୁ ବଡ ଦାଣ୍ଡରେ ଉଣ୍ଡଉଣ୍ଡ କର ।

ବସ୍ତଲ—ଆଜ୍ଞା ହଜୁର । ବଡ଼ ଦାଣ୍ଡ ହେଲେ ମୁକ୍ତ ମିଳନ୍ତା । ଜୀବନର ସଂକୀର୍ଣ୍ଣ ପଥରେ ଅନ୍ଧାର ଗଡ଼ଖାତରେ, ଶରଦନ ଜଆଁସ ଗାଢରେ କଲବଲ ହୋଇ ମରିବା ଅପେକ୍ଷା ବଡ଼ଦାଣ୍ଡରେ ସିଂହଦ୍ୱାରଚକର ଦନେହିଁ ମରିଯିବା ଭଲ ।

ଦାରୋଗା—(ଏକ ଚାପୁଡ଼ା ଦେଇ) ବନ୍ଦ କର ତୋର ବକ୍ତୃତା ।

ପୋଷ୍ଟମାଷ୍ଟର—ଅରେ ଶଳା, ଏଇଟା ରଣପୁର ମହାରାଜାର କୋର୍ଟ । ଏଠି ହଜୁର ଦେଓ୍ୟାନ ସାହେବ ବିଜେ ହୋଇଛନ୍ତି । ଏଠା ଝାଙ୍ଗୀ କୁଟହେଁକ ସିକୋ ନୁହେଁ । ଶଳାର ମୁହଁ ଉପରକୁ ହୋଇଗଲାଣି ।

ବସ୍ତଲ—ଆଜ୍ଞା, ନିର୍ମମ ଶାସନ ଚକତଳେ, ଯେଉଁ ଜାତି ଚିତ୍କାର କରି ମରିବାକୁ ଶିଖିଛି, ସେ ଜାତିର ମୁହଁ ଉପରକୁ...

ଆପଣମାନେ ଥାଉ ଥାଉ ...

ଦେଓ୍ୟାନ—ଦାରୋଗା, ଏ ଶଳା ଦଗଲବାଜ ପାଜି ନିମକହାରାମଙ୍କର ବିଚାର ଦରକାର ନାହିଁ । ଅଗ ବର୍ଷେ ବର୍ଷେ ମାମୁଁଘରେ ଘଣା ପେଲନ୍ତୁ ।

ପୋଷ୍ଟମାଷ୍ଟର—ନାହିଁ ଆଜ୍ଞା, ବସ୍ତଲ ସହିତ ଏ ସମସ୍ତଙ୍କୁ ରଣପୁରରୁ ବେଦଖଲ କରାଯାଉ । ରଣପୁରରେ ଏମାନେ ରହିପାରିବେ ନାହିଁ । ରଣପୁର ୧୪ କୋଶରେ ଏମାନେ ଗୈର ଜକାୟତ ପାଇଁ ।

ବସ୍ତଲ—ଗୈର ଜକାୟତମାନେହିଁ ଦିନେ ଦରବାରରେ ଅସନ୍ତି ।

ଦେଓ୍ୱାନ—ଅବେ, ଶଳା, ସୁରକା ବଚ୍ଚ—
ଦାରୋଗା—ଚୁମ୍ବକର ନମକହାରାମ—
ପୋଷ୍ଟମାଷ୍ଟର—କଟର ନନ୍ଦପୁରର ଶ୍ରୀକଣ୍ଠ ନାହାକକୁ କିଏ ବତାଇଲା ?
ଠେଂଙ୍ଗର—ବଣରୁ କାଠ ହାଣି ନେବାପାଇଁ କିଏ ଲୋକଙ୍କୁ କୁଶିକ୍ଷା
ଦେଲା ?
ବଗଲ—ଅଜ୍ଞା, ଜନ୍ମଭୂମିରେ ଯାହାର ଦରକାର, ମାଟିରେ ଯାହାର
ମମତା, ଦେଶରେ ଯାହାର ଶ୍ରଦ୍ଧା, ସେହି ଏକା ନେଇଥିବେ—
ଦେଓ୍ୱାନ—ଚୁମ୍ବକର ବଦମାସ । ଚୁପ୍‌କର—ପୁଣି ମାଡ଼ ହେବ...
ବଗଲ—ମାଡରେ ପିଠି ଫାଟିଯାଉ । ବୃଦ୍ଧ ବୟସର ରକ୍ତ କଣିକାରେ
ଏ ଦେଶରେ କୋଟି କୋଟି ଜନତାର ରକ୍ତ ନାଚି ଉଠୁ ।
ଦେଓ୍ୱାନ—ଦାରୋଗା (କଣ୍ଠ ଉଚ୍ଚ କରି) ଏ ସବୁଙ୍କୁ ଓଳିଏ ଲେଖାଏ
ଖାଇବାକୁ ଦେବ । ଦାଙ୍କ ଓଳିଏ ଖାଜା ଉପାସ ।
ଲୁହାନ ଖାଁ—ଅଜ୍ଞା, ଏହି ବୁଢ଼ା ସମସ୍ତଙ୍କୁ ନ ଖାଇବା ପାଇଁ ବତାଉଛି ।
ଦାରୋଗା—ଅଜ୍ଞା ହଜୁର, ଏ ଶଳାର ଅନ୍ଧସନ୍ଧ ପର୍ଯ୍ୟନ୍ତ ଅଚରଣ
ଦେଖିଲେ—
ଦେଓ୍ୱାନ—କିମିତି ଦେଖିଲେ, ନରେନ୍ଦ୍ର ମହାପାତ୍ରଙ୍କ ହୁକୁମ
ଅନୁଯାୟୀ ଏହି ସମସ୍ତ ଦଣ୍ଡ ଦଳଙ୍କୁ ଗୋଡ଼ ପାଟି ମାଟି ହାଣି
ତଳେ ପୋତିଦେଇ କଣ୍ଟା ଛାଟିଦିଅ । କେହି ଯେମିତି ସୁବିଧା
ପାଇବେ ନାହିଁ ।
ବଗଲ—ଆମେ ଅଜ୍ଞା, ସେଇଥିପାଇଁ ଗୃହରୁ । ଅନ୍ଧନ୍ଧ ପଥରେ ଯାଇ ନ
କଲେ, ଅଭିଳାଷର ଆଶା ଲକ୍ଷ୍ୟ ଯୁଗେ ଯୁଗେ ଅପୂର୍ଣ୍ଣ
ରହିଯାଏ...ଦେବଙ୍କୁ ଧର୍ମାବତାର, ହଜୁର ଆପଣଙ୍କ ସାଙ୍ଗରେ
କଥା କହିବାପାଇଁ ଯେବେ ଅଧିକାର ନାହିଁ, ତେବେ......
ଦେଓ୍ୱାନ—ନାହିଁ ନାହିଁ, (ଗର୍ଜନକରି) ତମମାନଙ୍କ ପାଟିରେ, ଲଢ଼ରେ
ତଳା ଲୁହା କଣ୍ଟା ପଟିବାକୁ ହେବ । ତାହାହେଲେ
ତୁମେମାନେ ଅଯୁତକୁ ଆସିବ । ଏହି ରଣପୁର ଚଳଦକୋଣ
ପୃଥ୍ୱୀରେ ଅବସ୍ଥା ଶାନ୍ତ ହେବ ।

ବସ୍ତଲ—ଶଭ୍ରେ ଲୁହା କଣ୍ଟା ବରଂ ଶ୍ରେୟସ୍କର। କିନ୍ତୁ ତୁଣ୍ଡରେ ତାଲା ପକାଇ ସହିନେବା ପ୍ରକୃତ ପୁରୁଷର କାମ ନୁହେଁ……

ଆପଣଙ୍କ ଶାସନରେ ପ୍ରଜାମାନେ ଯେଉଁ ସୁଖଶାନ୍ତି ପାଉଛନ୍ତି ତାହା ମଣିନାଗ ପାହାଡ଼ତଳେ ଶ୍ମଶାନ ଶାନ୍ତିଠାରୁ କୌଣସି ଭାବରେ ଭିନ୍ନ ନୁହେଁ—

କଲିକତା ରେଙ୍ଗୁନରୁ ଦରିଦ୍ର ନିର୍ବାସିତ ପ୍ରବାସୀ କୁଲିର ପାଞ୍ଚ ଦଶଟଙ୍କା କରି ଡ଼ାକରେ ମନି ଅର୍ଡର ଆସିବ। ଏଣେ ପେଟରେ ଓଦାକନା ଦେଇ ଅଖିପାଣି ଅଖିରେ ମାରି ନାକକାନ ଛୁଙ୍କରି ଓଡ଼ିଆଣୀ ଘରେ କାନ୍ଦୁଥିବ, ଟଙ୍କା ଆସିବ ଜଣଙ୍କ ନାଁରେ, ଟଙ୍କା ମଝିରୁ ଝାମ୍ପିନେବ ଜଣେ—

ପୋଷ୍ଟମାଷ୍ଟର—ଚୁପ୍ କର।

ଦେଓ୍ୱାନ—ଦାରୋଗା, ଲଗାଅ ଚାବୁକ, ମୁହଁ ବଢ଼ି ବଢ଼ି କଥା କହୁଛି।

ଜନୈକ ବନ୍ଦୀ—ହଜୁର ଧର୍ମବତାର। କାହାର ମୁହଁ ବଢ଼ି ନ ଥାଏ। ମୁହଁ ମଧ୍ୟ କେବେ କାହାର ଜନ୍ମରୁ ବଢ଼ି ନ ଥାଏ। ଅବସ୍ଥା ମଣିଷକୁ ସବୁ କରେ। ଆମ ମୁହଁ ବଢ଼ିବା ନିମନ୍ତେ ଆପଣ-ମାନେ ହିଁ ଦାୟୀ।

ଆପଣ ଦେଓ୍ୱାନ ହୋଇ ଯଦି ସାମାନ୍ୟ କେତେଟା ଖର-ଲୁହାଙ୍କ କଥାରେ ଅମମାନଙ୍କୁ ଦଲି ପେଷି ଦଅନ୍ତି, ଅମ-ମାନଙ୍କର ମୁହଁ ବଢ଼ିବା କିଛି ବଡ଼କଥା ନୁହେଁ।

ଦେଓ୍ୱାନ—ଏ କିଏସେ (ଦାରୋଗା)।

ଦାରୋଗା—ଏ ସେହି ଭୀମା ପଧାନ।

ଦେଓ୍ୱାନ—ଏହି ଶଳା ଜରିପଡ଼ାଁ ଗାଁରୁ ମିବା ଆସିବା କରେ ?

ଦାରୋଗା—ହେ ହଜୁର। ଖାଲି 'ଜରିପଡ଼ା ନୁହେଁ, ବାଣପୁର, ଝଲିକୋଟ ଏ ଅଡ଼େ, ଖୋର୍ଦ୍ଧା ସବୁଅଡ଼େ ଯାଏ…

ଦେଓ୍ୱାନ—ଏହି ହାରାମ କହୁଛି ନା, ମୋଗଲବନ୍ଦୀ ଗଡ଼ଜାତଠାରୁ ଭଲ।

ବଗଲ—ଅଛି, ଖାଲି ସେତିକ ନୁହେଁ ସେଠି ଅଛି ସ୍ୱାଧୀନତା, ମଣିଷର ଜନ୍ମଗତ ଅଧିକାର । ଏଠି ପଶୁର ଶାସନ । ସେଠି ଜୀବନର ଯଥାର୍ଥ ବିନିଯୋଗ……

ଦେଓ୍ୱାନ—'ମୋଗଲବନ୍ଦୀ' ରାସ୍ତା ଦଶି ଯାଉଛି ।

ବଗଲ—ସେହିତ ଏକମାତ୍ର ରାସ୍ତା । ଗଡ଼ଜାତବାସୀଙ୍କ ପାଇଁ ଏକମାତ୍ର ପ୍ରେରଣା, ଏକମାତ୍ର ଆଶା ଆଶ୍ୱାସନା…

ଦେଓ୍ୱାନ—(ଠାରିଦେବା)

ଦାରୋଗା—(ଚାବୁକଦେଇ) ଚୁପ କର ନିମକହାରାମ ।

ବଗଲ—ଦାରୋଗା ବାବୁ, ନିମକହାରାମ ଆପଣ ।

ଦାରୋଗା—(ଚାବୁକ ଦେବା)

କୁର୍ବାନ ଖାଁ—(କାନ ଟାଣି ବନ୍ଦୀମାନଙ୍କର ମୁଣ୍ଡକୁ ମୁଣ୍ଡ ପିଟିବା)

ବଗଲ—(କାନ୍ଦ କାନ୍ଦ) ଏ ମାଟିର ଅନ୍ନ ଖାଇ ଆପଣମାନେ କେତେଜଣ ଦେଶଦ୍ରୋହୀ ରଣପୁରରେ ରକ୍ତର ସୁଅ ଛୁଟାଇ ଅଛନ୍ତି । ଆପଣମାନଙ୍କ ଶାସନ ଅତ୍ୟାଚାରରେ ଏହି ଐତିହାସିକ ଦୁର୍ଗରୁ ଶାସନ ଲୋପ ହେଲଣି । ଦୁଃଖ, ନିର୍ଯାତନା, ଅତ୍ୟାଚାର, ବେଠି, କୋରଜା ଆମ୍ଭମାନଙ୍କର ରକ୍ତ ଶୋଷି ନେଉଛି ।

ଦେଓ୍ୱାନ—ମୁଁ କିଛି ଶୁଣିବାକୁ ଚାହେଁ ନାହିଁ…
ଦାରୋଗା, ଏମାନଙ୍କ ମୁହଁରେ ପଟିଶ୍ରା କରେଇବ, ଏମାନଙ୍କୁ ହାଡ଼ ପାଣି ଛୁଆଁଇ ପିଟିବ ।

ବଗଲ—ତା ହେଲେତ ଆମ୍ଭମାନଙ୍କର ମୁକ୍ତି…

ଦେଓ୍ୱାନ—ମୁକ୍ତି, ନିମକ ହରାମ-ରାଜଦ୍ରୋହୀ…

ଜନୈକଦ୍ରୋହୀ—ରାଜଦ୍ରୋହୀ ? ହା, ହା, ହସି ।

ଦାରୋଗା—(ଚାବୁକ ଚଲାଇ)

କୁର୍ବାନ ଖାଁ—(ବୁଟ୍‌ରେ ମାଡ଼ଦେବା--)

ଦେଓ୍ୱାନ—ଦେଖ ଦାରୋଗା, ତମ ଦେଓ୍ୱାନ ସାହେବଙ୍କ ହୁକୁମ, ଅନ୍ଧ ରାତିରେ ଏମାନଙ୍କୁ, କାଇ, ଜନ୍ଦା, ପିମ୍ପୁଡ଼ି ଭିତରେ ରହିବାକୁ ହେବ…

ଦାରୋଗା—ଆଜ୍ଞା, ମୁଁ ତ ସେ ସବୁ ବ୍ୟବସ୍ଥା କରି ସାରିଛି ।
ଦେଓ୍ୱାନ—ନା, ନା, ସାତମନ୍ତ ବଣ ଜଙ୍ଗଲରୁ ଅମ୍ବ ପଣସ ଗଛରୁ କାଇ ପୁଡ଼ା ଆଣି ଏମାନଙ୍କ ଦେହରେ ଛାଡ଼ିଦେବାକୁ ହେବ ।
ପୋଷ୍ଟମାଷ୍ଟର—ପୁଣି ଲଙ୍କା ମରିଚ ଧୂଆଁରେ ଏମାନଙ୍କୁ ଶୋଇବାକୁ ଆଦେଶ ଦିଆଯାଉ ।
ଦେଓ୍ୱାନ—ଦାରୋଗା, ତମ ଦେଓ୍ୱାନ ସାହେବଙ୍କର ହୁକୁମ, ଏ ସମସ୍ତଙ୍କର ହାତଗୋଡ ଭାଙ୍ଗିବାକୁ ପଡିବ ।
ବଗିଲ—(ନିଶ୍ୱାସ ପକାଇ) ରଣପୁରର ଭବିଷ୍ୟତ କି ସ୍ୱର୍ଣମୟ ।
ଦେଓ୍ୱାନ—ସ୍ୱର୍ଣମୟ ?
ପୋଷ୍ଟମାଷ୍ଟର—ନାହିଁ ଆଜ୍ଞା, ଉପହାସ କରୁଛି ।
ରେଂଜର—ନାହିଁ ଆଜ୍ଞା ଏ ଶଳାଙ୍କୁ ନୟାଗଡ଼ ଜେଲକୁ ପଠାଇବା ଉଚିତ ।
ବଗିଲ—ପ୍ରସ୍ତୁତ ଅଛି ରେଂଜର ବାବୁ । ବିନା ଅପରାଧରେ ଶାସ୍ତି ବରଣ କରିବାକୁ ସେବକବାସୀ ବଗିଲ ଶିକ୍ଷା କରିଛି । ଅହିଂସା ଯାହାର ଧର୍ମ, ମହାତ୍ମା ଯାହାର ଜୀବନର ଦେବତା, ସତ୍ୟ ପାଇଁ ଯେ, ଅତ୍ମବଳୀ ଦେଇପାରେ, ତାର ନୟାଗଡ଼ କଣ, ଢେଙ୍କାନାଳ କଣ, ସବୁଠାରେ ସେ ସୁଖୀ । ସ୍ୱାଧୀନ ପକ୍ଷୀ ସବୁଠାରେ ସୁଖୀ ।
ଦେଓ୍ୱାନ—ଦାରୋଗାଙ୍କ ପ୍ରତି—See his audacity.
ପୋଷ୍ଟମାଷ୍ଟର—ତାହାର ଆଜ୍ଞା ଏହି ମୁହଁ ଭାଙ୍ଗିବାକୁ ହେବ ।
ଦେଓ୍ୱାନ—ଦେଖୁ ସେବକବାସୀ ବଗିଲ, ତୋର ଆଗରେ ତୋର ପୁଅ ବୋହୂଙ୍କ ଉପରେ ଅତ୍ୟାଚାର କରାଯିବ—
ବଗିଲ—ଅତ୍ୟାଚାର କଣ ଆଉ ବାକୀ ଅଛି । ଏହି ରାଜା ରାଜୁଡ଼ା ଅନ୍ଧ ରାଜ୍ୟରେ, ଏହି ଅନ୍ଧାର ମୁଲକରେ, ରାଜା ଯେଉଁଠି ଅନ୍ଧାର ବଟଜ କରନ୍ତି, ସେଠି ଆଉ ଅଲୋକର ପ୍ରଶ୍ନ ନାହିଁ । ଅତ୍ୟାଚାର...।
ଦେଓ୍ୱାନ—ଅତ୍ୟାଚାର ନୁହେଁ, ତୁମକୁ ବନ୍ଧି ରହି ଶାନ୍ତି ଓ ଶୃଙ୍ଖଳାର ଲାଲ ଗୁଳୁକ ସହିବାକୁ ହେବ । ତମେ ଏ ରାଜାଙ୍କ ରାଜ୍ୟରେ

ଦେଶଦ୍ରୋହ କଥା କହିବ ନାହିଁ । ତମେ ପାଟି ଫିଟେଇ ପାରିବ ନାହିଁ ।

ଜନୈକ ବନ୍ଦୀ—ହଜୁର୍ ।

ଦାରୋଗା—(ଗୃଦ୍ଧକ ପ୍ରହାର କରି) କଣ ହଜୁର୍ ?

ଦେଓ୍ୱାନ—ଆରେ କଣ ସବୁ ମାନିଯାଉଛୁ ?

ଜନୈକ ବନ୍ଦୀ—ନାହିଁ ଆଜ୍ଞା ମୋତେ ରାଜ୍ୟରୁ ତଡ଼ି ଦିଆଯାଉ ।

ଦେଓ୍ୱାନ—(ଗର୍ଜ୍ଜନ କରି) ଅସମ୍ଭବ, ଅସମ୍ଭବ । ଏହିଠାରେ ରହିବାକୁ ପଡ଼ିବ ।

ଜନୈକବନ୍ଦୀ—କଣ ଜବରଦସ୍ତି ?

ଦେଓ୍ୱାନ—ତୁମକୁ ରଣପୁର ବାହାରକୁ ଯିବାକୁ ହେବନି । ଏଇଟି ରାଜ୍ୟ ମୁଲକରେ ନିୟମ, ଆଇନ, କାନୁନ ମାନି ରହିବାକୁ ହେବ । ତମେ ଚୋର, ତମେ ଡକାୟତ । ଲୌହଦଣ୍ଡର ମାଡ଼ରେ ତମର ମୁଣ୍ଡ ଫାଟିବ ।

ବଗଲ—ଯାହା ହେବାର ହେଉ ଆଜ୍ଞା । ନିରପରାଧୀର ଯେପରି ସୁବିଚାର ହୁଏ ।

ଦେଓ୍ୱାନ—ଏମାନଙ୍କୁ ସବୁ ନେଇ ଯାଅ···

ଦାରୋଗା—(ଜୁବାନ ପ୍ରତି) ସମସ୍ତଙ୍କୁ···ଚାଲର...

ବଗଲ—ଆଜ୍ଞା, ଆଜ୍ଞା

ବନ୍ଦୀମାନେ—ହଜୁର୍ ହଜୁର୍

ଜୁବାନଖାଁ—( ବାଧା ଗୃପୁନା ସମସ୍ତଙ୍କୁ ଦେବା ) ( ଦେଓ୍ୱାନଙ୍କର ଦୃଷ୍ଟି ପଡ଼ିଲା କପିଳ ପାଣ୍ଡ ଉପରେ) କିଓ କପିଳ ଉଠ, ତମର ରାଜଭକ୍ତ ଜଣା ପଡ଼ିଲା ।

ପୋଷ୍ଟମାଷ୍ଟର—ଆଜ୍ଞା, କପିଳ କଣ ସେମିତ ଉଠିବ...

ରେଞ୍ଜର—କପିଳ, ଉଠ, ଦେଓ୍ୱାନଙ୍କର ହୁକୁମ—

(କପିଳ ଉଠିବା, ବେଶ ଅତି ମରହଟ୍ଟି—ଚୁଟି, ହାତରେ ବାଡି—କୋଟ ଉପରେ ଗଞ୍ଜି—ଚଷମା, ଗୋଡରେ ଚଟି) ।

କପିଳ—ଆଜ୍ଞା, ପ୍ରଣାମ ! (ଦେଓ୍ୱାନ ବାବୁଙ୍କ ଗୋଡ଼ରେ ମୁଣ୍ଡ ଛୁଅାନ୍ତି)
ଦେଓ୍ୱାନ—(ସମସ୍ତଙ୍କ ପ୍ରତି ଲକ୍ଷ୍ୟ କରି) ଆମ କପିଳ ଥିଲେ...ସବୁ
ଗୁଲଜାର...(ସବୁ ଚୁପ ଚାପ) ।
ପୋଷ୍ଟମାଷ୍ଟର—ଆଜ୍ଞା, କପିଳ ପାତ୍ର କଥା କାହିଁକି କହୁଛନ୍ତି ।
ରେଞ୍ଜର—କପିଳ ତ ଜଣେ ଦେବତା, ଆଜି ମୟୂରଖାଲିଆ ନରସିଂହପୁର
ଖଣ୍ଡକୁ ଠିକ୍ ରଖିଛି ।
କପିଳ ପାତ୍ର—ଆଜ୍ଞା (ଦାନ୍ତ ଦେଖାଇ) କପିଳ ପାତ୍ରଥିଲେ, ସବୁ ଅଛି ।
ଏ ଗ୍ରେଟ ହାକିମ୍ଙ୍କୁ ଭଲ ପୁଅ...
ଦେଓ୍ୱାନ—ପାତ୍ରେ କଣ ସବୁ ବ୍ୟବସ୍ଥା ହେଲା ।
କପିଳ—ଆଜ୍ଞା ଠିକା ଲୋକ ଅସିଯାଇଛି । ଆଉ ଶହେ ଘର ବର୍ତ୍ତିମାନ
ବେଟି ଧରି ବସିଛନ୍ତି । ଅପଣଙ୍କ ଅଗରେ ପଇଠ ହେଲେ
ଭୂଆସ ଭିତରକୁ ଯିବ ।
ଦେଓ୍ୱାନ—ଠିକା ଆଣ ।
କପିଳ—(ବାହାରକୁ ଯିବା) ଗୋଟିଏ ବସ୍ତା ଆଣିବା...
ଦେଓ୍ୱାନ—ଏ କଣ ଖାଲି ଠିକା
କପିଳ—ହଜୁର
ଦେଓ୍ୱାନ—ଭେଟିବାଲା ବାହାରେ ବସନ୍ତୁ । ମୁଁ ଭୂଆସକୁ ଖବର
ପଠାଏ । ଦହ ପାଣି ବଢ଼ିଲାଣି କି ନାହିଁ...ପାତ୍ରେ, ଆଉ
କଂଗରସ ଗୋଳ କଥା କଣ ?
ପାତ୍ରେ—ଆଜ୍ଞା (ହସି ହସି କାନ କୁଣ୍ଡାଇ) ସେହି କଥାଟା, ଆଜ୍ଞା ସେହି,
—ମୁଁ କହି ଦେଇଛି ଗାଁ ଗାଁ ବୁଲି । ପୁଅ ସାବଧାନ ହୁଅ, ଫଗୁ
ମହାନ୍ତି ଦଅନକୁ କପିଳ ପାତ୍ର ସରବରାକାର । ଖାଲି ରସଟିକି
ନଦେଇ ଦେବ । ଯୋଡ଼ ଯୋଡ଼ା ଦ୍ଳ ଦ୍ଳ ବନ୍ଧା ହେବ ।
ମାଟି ଘର ଧଣା ପେଲିବ, କଡା ବାଜେଇବ, ପୁଲିସ
ଦାରୋଗା, ଗାଁଟାକୁ ଉଚ୍ଛନ୍ନ କରି ଦେବେ । ଯେମିତି ମୋ କଥା,
ଶୁଣିଛନ୍ତି ସବୁ ଚୁପ୍ ଚାପ୍ ଖାଲି ରସଟିକି ଲଦେଇ ଦେବ ।
ଦେଓ୍ୱାନ—ଆଉ କଣ ହେଲା...ସେ କଥା ।

କପିଳ—ଅଜ୍ଞା ବରାଳଙ୍କ ପୁଅର ବୋହୂ ଆସିଛି । ମୁଁ କହିଦେଲି, ଆଗ ବୋହୂଟିକ ଆମ୍ଭଙ୍କ ଦେଖା ପାଇଁ ପଠାଇ ଦଅ । ସବୁ ରଣ୍ଡୀ ଗୃମୁଣ୍ଡା ସନ୍ତୁଷ୍ଟ ହୋଇ ଯିବେ—

ଦେଓ୍ୱାନ—ଆଉ କେତୋଟି ଠିକ୍ କରିଛ ।

କପିଳ—ଅଜ୍ଞା, ଆମ ଗାଁରୁ ସାତ ମୂର୍ତ୍ତି, ପୁଜାଝଳାରୁ, ଗୃର ମୂର୍ତ୍ତି ବାସୁଦଅ, ଶ୍ୟାମଦନପୁର, କେମାଦେଈପୁର, ସବୁଅଡ଼େ ଭେଦଅ ପଠାଇଛି । ଅସଲ ମାଲ ମିଳିବେ ।

ପୋଷ୍ଟମାଷ୍ଟର—ଅଜ୍ଞା, ଅଉ ଗୋଟିଏ କଥା, ଏହି ଯେତ୍ରବାସୀ ବରାଳର ଝିଅ ।

କପିଳ—ହଁ, ହଁ, ଅସଲମାଲ । ମୁଁ ଠିକେଇ ସାରିଛି । ଅଜି ଟଙ୍କା ଦେଇ ଲୋକ ପଠାଇଛି । ହୋପାତ ବନ୍ଦୀଶାଳାରେ, ବଡ଼ ଭାଇ ତ ବାର ଦୁଅର ଶୁଣ୍ଡି ପିଣ୍ଡା ବୁଲୁଥିବ । ନୂଆ ବୋହୂ ଆସିଛି । ମୁଁ ମୁହେଁ, ମୁହେଁ, ଶୁଣାଇ ଦେଇଛି । ଆଗ ଅନୁକୂଳ ଜଆସ ଅଜ୍ଞା । ଅମଲ ଅମଲ ଦେଓ୍ୟାନ ଅଛନ୍ତି--

ଦେଓ୍ୱାନ—ନ ହିଁ, ନାହିଁ, ଆଗ ସବୁ ଜଆସରୁ ଅସନ୍ତୁ ।

କପିଳ—ଏଁ, କପିଳ ପାଦର ଏ ସବୁ ମିଳିଟକର କଥା—

ଦେଓ୍ୱାନ—ଆଉ ତମର କାଗଜ ପତ୍ର ସବୁ ଠିକ୍ କରିଛ ତ ।

କପିଳ—କାଗଜ ଆଉ ପତ୍ର--ସବୁ ଠିକ୍ ଠିକ୍—ପାକ ବଜାଟାରେ ସବୁ ଅଛି—

ପୋଷ୍ଟମାଷ୍ଟର—ଟାଙ୍କି ବଜା କାତ—

ଦେଓ୍ୱାନ—ଦେଖି ତମ ଡାଏରିରେ କଣ—

କପିଳ—(ପାକଟିରୁ ଛୋଟ ଖାତାଟିଏ କାଢ଼ି) ଏଇଟି ଅଜ୍ଞା, ହବୁ, ଏଥିରେ ୧୮ ଜୋଣର ହାନ ଲାଭ ଅଛି ।

ଦେଓ୍ୱାନ—କଂଗରସ ମେଳକଥା କଣ ଖବର ପାଇଛ ?

କପିଳ—ଟିକିଏ ଶୁଣନ୍ତୁ ଅଗ—ଧନମାଲୀ ରାମ, ଦୁରୁପା ଶ୍ର—ଆନନ୍ଦ ବରାଳେ, ପଦନ ଦାସେ, ବଂଶୀ ପଣ୍ଡା, ଅଜୁ ରାଉତ— ଏସବୁ ଏକାଠି ହୋଇଛନ୍ତି ।

ପୋଷ୍ଟମାଷ୍ଟର—ଅଜ୍ଞା, ଆଉ ଗୋଟିଏ କଥା ଜାଣନ୍ତି, ଅସଲ ଦ,
        ଜଣଙ୍କୁ ଖଣ୍ଡିପାଇଛ ।

କପିଳ—ମୁଁ କହୁଛି କହୁଛି । ଅସଲ ଦ ଜଣଙ୍କୁ ଅସଲ ଠାଏ ଲେଖି
        ରଖିଛି ।

        (ଡାଏରି ପୃଷ୍ଠା ଲେଉଟାଇବା)

ବେର୍ଦ୍ଧାନ—ଆଜ୍ଞ କଏ, ସେମିତି ଜଣ ଶୁଣା,

କପିଳ—ଅଜ୍ଞା, ରହନ୍ତୁ, ଆଉ ଦକ୍ସ ପରଜା । ସେ ଦ'ଟା କଣ କରିବେ ।
        ଗାଲ ଚିପିଲେ

ପୋଷ୍ଟମାଷ୍ଟର—ନା, ନା, ତମେ ଭୁଲ ବୁଝିଛ, ସେହି ଠୋକା ଦ'ଟାତ
        ଏଠିଲାଗେ ବେଶୀ ଅଙ୍ଗରମତା—ରଣପୁର ପୃଥ୍ୱୀଙ୍କ—

କପିଳ—ପୃଥ୍ୱୀ ରହିବ କି ରସାତଳେ ପଶିବ—

ବେର୍ଦ୍ଧାନ—ସେ ଠୋକା ଦ'ଟା ଜାହିଁକି ହାବୁଡ଼ି ଦଣ୍ଡିନାହାନ୍ତି ।

ପୋଷ୍ଟମାଷ୍ଟର—ଅଜ୍ଞା, ଆମ୍ଭକୁ ପଗ୍ ଦନେ, ସାନ ଗଡ ବଡେ ହୋଇ
        ଥିଲେ, ବାହାରେ ସେ ଠୋକା ଦଟା, ଖଦଡ଼ ପିନ୍ଧି, କାନ ଫେର
        ମେଲାଇ ବୁଲୁଛନ୍ତି । ଆମ୍ଭର ପାଙ୍କୁ ବାନ୍ଧିକି ଥିଲେ, ନାଚି ଦେଇ
        ଥାଆନ୍ତେ ବୋଲି କହୁଥିଲେ—

ବେର୍ଦ୍ଧାନ—ମୁଁ ତାଙ୍କୁ ସେଇଆ କରିବ ।

କପିଳ—ମୁଁ ତାର ସବୁ ଉପାୟ କରିଦେଇଛି ।

ପୋଷ୍ଟମାଷ୍ଟର—ହଇଏ ପାରେ, ଆଉ କଣ ପଇସା ଟଙ୍କା ଯୋଗାଡ଼
        କରୁଛ ନା, ନାହିଁ ।

କପିଳ—ଅଜ୍ଞା, ମୁଁ ତ ମୋ ଉପାୟରେ ଅଛି । ହବୁନ୍ତ, ଏକାଥରକେ
        ସୁନାମାଳୀ ଶହେଟା ଉଠାଇ ଅଣିବକି ?

ବେର୍ଦ୍ଧାନ—ଅଣ, ତାକୁ ହାତକରି ସାରିଲେ,......

କପିଳ—ଅଜ୍ଞା ବସିଲ ଏତିକବେଳେ ଜେଲରେ ଅଛି, ମାରିଥିଲେ
        ଏତିକବେଳେ......

ପୋଷ୍ଟମାଷ୍ଟର—ତମେ ପାରେ—ଖାଲି ଗାଁ ଗାଁ ବୁଲି ଲୋକଙ୍କୁ ଜବତ
        କର ।

ରେଞ୍ଜର—ଖାଲି ଜବତ ହେଲେ ହେବନାହିଁ ।

ଦେଓ୍ୱାନ—ତା ସଙ୍ଗରେ ଠିକ୍ ଜୋରିମାନା ଦରକାର ।

କପିଲ—ଆଜ୍ଞା, ଆଗେ ବଗିଲ ଘର ଜମି ବାଡ଼ି ନିଲାମ କରି ଦିଅନ୍ତୁ—

ଦେଓ୍ୱାନ—କିଏ ଅଛରେ,......

(ହଠାତ୍ ଜଣେ ପିଅନର ପ୍ରବେଶ)

ଦଣ୍ଡାୟମାନ ହୋଇ—

ଦେଓ୍ୱାନ—ନାଜର ବାବୁଙ୍କୁ ଡାକ

(ପିଅନର ପ୍ରସ୍ଥାନ; କିଛିଏ ସମୟ ପରେ ନାଜରଙ୍କର ଆଗମନ)

ନାଜର ବାବୁ—(ଯୁକ୍ତ ପ୍ରଣାମ କରି କରି)

ଦେଓ୍ୱାନ—ନାଜର ବାବୁ; କ୍ଷେତ୍ରବାସୀ ବଗିଲ ଘର ନିଲାମଜାରି ହେବ—ଅର୍ଡ଼ର କର......

ନାଜର—ଯେ ହଜୁର,......

କପିଲ ପାଣ୍ଡେ—ଆଜ୍ଞା, ଜମିବାଡ଼ି ତାର କେତେ ବାଜ୍ୟାପ୍ତି କରନ୍ତୁ—

ଦେଓ୍ୱାନ—ତମେ କପିଲ ଅଜି ଉଆସକୁ ଯିବ । ସ୍ୱାମୀଙ୍କର ଅର୍ଡର ହୋଇଛି ।

କପିଲ—ଆଜ୍ଞା, ହଜୁର ।

(ଏହି ସମୟରେ କଚେରୀ ଘଣ୍ଟାରେ ଗୁରୁଠା ବାଜିଲା)

ଦେଓ୍ୱାନ—କଚେରୀ ଆଜି ବନ୍ଦ ରହିଲା ।...ଯେଉଁମାନେ ଦେଖି ଆସିଛନ୍ତି, ତାଙ୍କୁ କହିଦିଅ; ତୋଷଖ ପାହାରାଟି ରହିବେ—

(ପଟ୍ଟ ପତନ)

---

## ଷଷ୍ଠ ଦୃଶ୍ୟ

(ଗାଁ ଦାଣ୍ଡରେ ଖଞ୍ଜଣି ଧରି ଗୀତଟିଏ ଗାଉଛି, ଗୋଟିଏ ଦରିଦ୍ର ଅନ୍ଧ ଲୋକ)

ଚକାଡୋଳା ହେ
ଏକି କାଳ ହୋଇଲା...
ରକ୍ଷକ ଯେବେ ଭକ୍ଷକ ହେଲେ—
ଦରିଦ୍ରମାନଙ୍କର ଏସବୁ ଲୀଳା ।
ଖିରପିଛ କହ୍ନ, ପ୍ରିୟା ପ୍ରୀତି ଦେଇ
ଧଳାକୁ କରିଲେ କପଟ କଳା
ଚକାଡୋଳା ହେ—
ମାନ ମହତ ଗୋ ଇଜ୍ଜତ ନରହେ
ମଦ ମାଇକିନା ମୋହବତ ବହେ
ସିଂହାସନ ଟଳମଳ ହୋଇଲା,
ଚକାଡୋଳା ହେ—
ହେଜଲା ବଦନ ହେ ମଧୁସୂଦନ
ଦୀନ ଦରିଦ୍ରର ହୃଦୟ ଧନ
ତୁମ ନାମେ ସିନା ଅପକୀର୍ତ୍ତି କଲା
ଯୁଗ ଯୁଗ ପାଇଁ ଲାଗି ରହିଲା—

(ଭିକାରିର ଗୀତ ଶୁଣି କମଳା କୁଠୀରରୁ ବାହାରକୁ ଆସି ଗୃଉଳ ପଇସା ଦେବା)

କମଳା—ବୁଢ଼ା, ଏ ଗୀତଟି କେଉଁଠୁ ଶିଖିଲ ?

ଅନ୍ଧ—ମା, ଗରିବ ଲୋକ, କାହାଠୁଁ କେତେବେଳେ ପଦେ ଅଧେ ଶୁଣିଥିଲି—

କମଳା—ବୁଢ଼ା, ଆଉ ଥରେ ବୋଲ—

(ବୁଢ଼ା ଗୀତଟି ଗାଇ ଗାଇ ଦୂର ବାଟରେ ପଶିଗଲା । ଦ୍ୱାର ବନ୍ଦ କରି କମଳା ପଶିଲା ଘରେ)

[ ଯବନିକା ପତନ ]

# ଦ୍ୱିତୀୟ ଅଙ୍କ

## —ପ୍ରଥମ ଦୃଶ୍ୟ—

( ଗାଁ ଗୋଷ୍ଠର ରାସ୍ତା, ବଡ଼ ବଡ଼ ବରଗଛ ଠିଆ ହୋଇଛି । ବାଟରେ ଦୁଇ ତିନିଜଣ ଠିଆ ହୋଇଛନ୍ତି । ଦୁଇଜଣଙ୍କର ବୟସ ୪୦ ହେବ—ଆଉ ଜଣେ ଯୁବକ । ଯୁବକର ନିଶ, କଲି;···ଗଞ୍ଜି ପିନ୍ଧିଛି । ହାତରେ ଖଣ୍ଡେ ଖଣ୍ଡେ ଦାଆ, କୋଡ଼, କୋଦାଳ । ବାଟରେ ଯାଉଥିଲେ କଥାବାର୍ତ୍ତା ହୋଇ । ଆଗରେ ଗୋଟିଏ ବରଗଛ ଦେହରେ କାଗଜଟାଏ ଛପା ହୋଇଛି—ବାମ ଓ ସହଦେବ—ବାମଦେବ ଟିକିଏ ଛୋଟ—ଆଉ ନୀଳ ଯୁବକ)

ଯୁବକ ନୀଳ—ଅରେ ଭାଇ ଏ କଣ କରେ ?

ବାମ—କାହିଁ କଣ ବା ?

ନୀଳ—ଅରେ ହେଇଟି ଗଛରେ ମ—

ବାମ—ଅରେ ବାଘ ହାତୀ ଚିତ୍ର ହୋଇଥିବ ପରା—

ନୀଳ—ନାହିଁମ, ଏଟା ଚିତ୍ର ନୁହେଁ ତ ।

ସହଦେବ—କଣ ଏଡ଼େ ଏଡ଼େ ଅକ୍ଷର ଗୁଡ଼ାଏ

ବାମ—ହ ବେ, ଅକ୍ଷର ଗୁଡାଏ କଣମ

ସହଦେବ—ଅରେ ତୁ ତ ପାଠ ପଢି ନଥିବୁ ।

ବାମ—ଯାବେ, ତୁତ ଭାରି ପାଠ ପଢିଚୁ ? ମୁଁ ପରା ଶ୍ରୀଧର ଗୁହାଳୀରେ ମାସେକାଳ ପଢିଥିଲି ।

ନୀଳ—ଗୁହାଳୀରେ ପଢିଲେ କଣ ହେଲା ?

ବାମ—ଅରେ, ମୁଁ ଗୋପୀଭାଷା, ଗୁଣସାଗର ପଢ଼ିଥିଲି ।

ସହଦେବ—ଅରେ, ଗୋପୀଭାଷା କିଏ ପଢୁନି—

ନୀଳ—ଏବେ ପଢିଲୁ ଏଠିକଣ ଲେଖା ହୋଇଛି ?

ବାମ—ତୁ ପଢୁ ନୁ—

ସହଦେବ—ଅରେ ନୀଳ, ଏଠିକି ଏ କାଗଜ ଆସିଲା କେଉଁଠୁ ?

ବାମ—ଅରେ ଆଉ କିଏ କଣ କମିଆଁ କରିଛି କି ?

ମାଲ—ଯା ଭାଇ କମିସ୍ନା କାହିଁକି ହେବ ଏ—
ବାମ—ଅରେ ଭୂତ ପ୍ରେତ କି...
ସହଦେବ—ଆରେ, ତୁ ଓଲୁ
ମାଲ—ଭାଇ ପଡ଼ିବୁଟି—
ସହଦେବ—ଭଣ୍ଡାଭଣ୍ଡି କର ତୁ ପଡ଼ିବୁ ନାଟି—,
ବାମ—(ଗୃହଅଡ଼କୁ ଚାହିଁ) ଅରେ କିଏ କୁଆଡ଼ୁ ଆସିବ ଯେ—
ସହଦେବ—ଆସୁ, ଆମେ ଚେଷ୍ଟା କରୁଛୁ କି—
ବାମ—ଅରେ, ଆମେତ ହେଲେ ଅଦା ବେପାରୀ, ଜାହାଜ ମୂଲ କରିବା କାହିଁକି ?
ମାଲ—ହଁ, ଅସଲ ଚୋର ଧରା ପଡ଼ିଲା ।
ବାମ—କଣ ? ଚୋର ଧରାପଡ଼ିଲା ।
ମାଲ—ଚୋର ନୁହେଁ ତ ଆଉ କଣ ?
ସହଦେବ—ନୁହେଁ କଣ ? କଣ କାଗଜୁଟେ ମରା ହୋଇଛି, ତୁ ଏଥିରେ ଥର ହର...
ମାଲ—ଖାଲି ଥରହର ନୁହେଁ, ଏକାବେଳକେ ଅଥୟ ।
ବାମ—ଅରେ ଭାଇ ତମେ ସବୁ ସେମିତି କୁହନା—
ମାଲ—କହିବୁ ନା କାହିଁକି ?
ବାମ—(ଗୃହଅଡ଼କୁ ଚାହିଁ) ମୋତେ ଭୟ ଲାଗୁଛି ଭାଇ । ଦେଖୁଛୁତ, ଗିଲ ଗିଲୁପତା ଗଗନେ ଉଡ଼ୁଛି, ତାଙ୍କୁ ରଖିବ କିଏ ? ଅରେ ଭାଇ ! ସିଏ ଯାହା ଗାଁରେ ଉଗଜ ପକାଉଛି । ବାଘ ଗରଜିଲା ପରି ଗର୍ଜନ ଛାଡୁଛି । ତାକୁ ଦେଖି ମୋର ଚେତା ଶୂନ୍ୟ—
ସହଦେବ—ଭୂତ ମଣିଷ, ପ୍ରେତ ମଣିଷ, ତୋତେ କାହିଁକି ଛନିଆ ଲାଗୁଛି ।
ବାମ—ମଣିଷ ହେଲେ କଣ ହେଲା ?
ସହଦେବ—ପ୍ରେତ ମଣିଷଟାଏ, ତାକୁ ଏତେ ଡର କାହିଁକି ?
ମାଲ—ନାହିଁ ନାହିଁ, ଆମ ବାମ ଭାଇଙ୍କର ଗୋଟାଏ ବଦଖୋଇ ।

ରାମ—ତୁ ତ କାଲିର ପିଲା; ଗାଁରେ ସିନା ନେତା ପାଲଟି ଯାଉଛୁ । କଂଗରସ କରୁଛୁ—

ଶୀଳ—କଥାଟା କହିଲୁ; ମନକୁ ପାଇଲା । ତୁ କଂଗରସକୁ ଡରୁ...

ସହଦେବ—ଅରେ ତୁ ପଢ଼ ନା କାଗଜରେ କଣ ଲେଖା ହୋଇଛି ।

ଶୀଳ—ରାମ ଭାଇତ ନାକ ଟେକୁଛନ୍ତି ।

ରାମ—କରେ ମୋର କଣ ଦୋଷ ହେଲା ।

ସହଦେବ—ତୋର ଏହି ଚୁପୁ ଚୁପୁ ଗତି—

ଶୀଳ—ନାହିଁ ନାହିଁ ତାଙ୍କୁ କିଛି କହିବା ନାହିଁ ।

ରାମ—ଶୀଳୁ, ତୁ କାଗଜଟା ପଢ଼ିବୁଟି ?

ଶୀଳ—( ଟିକିଏ ନିକଟକୁ ଯାଇ, ନିରୀକ୍ଷଣ କରି ଚାହିଁ ପଢ଼ିବାକୁ ଲାଗିଲା )

ଘୋଷଣା—

ରଣପୁର ଗଡ଼ଜାତର ଭାଇ ଓ ଭଉଣୀମାନଙ୍କୁ ଅନୁରୋଧ, ଆସନ୍ତା ବୁଧବାର ଦିନ ହାଟ ପଡ଼ିଆରେ, ରଣପୁର ୧୪ କୋଶ ଭାଇମାନଙ୍କର ଗୋଟିଏ ବଡ଼ ସଭା ହେବ । ସଭାରେ ବହୁତ ଲୋକ ଯୋଗ ଦେବେ । ଆମରି ଅନ୍ଧାର ମୂଲକରେ କପଟ ଦମନ ଲୀଳା ଚାଲିଛି । ପୋଲିସ ଅମଲାମାନେ ଶୋଷଣ କରୁଛନ୍ତି, ରାଜା କିଛି ବୁଝୁନାହାନ୍ତି, ଧର୍ମାବତାରଙ୍କ ନିକଟରେ ଆପତ୍ତି କଲେ ଆବେଦନପତ୍ର ତାଙ୍କ ନିକଟରେ ପହଞ୍ଚୁ ନାହିଁ । ଆମରି ଭିତରୁ ଦଳେ ଲୋକ, ପୋଲିସ ଅମଲାଙ୍କୁ ସାହାଯ୍ୟ କରି ଆମ ପରି ମଲା ମୁଣ୍ଡିଆଙ୍କୁ ହଇରାଣ କରୁଛନ୍ତି । ଜଙ୍ଗଲ ଆମର । କିନ୍ତୁ ଜଙ୍ଗଲର କାଠ ଗଛ ଉପରେ ଆମର ଅଧିକାର ନାହିଁ । ପୋଖରୀ ଆମର, ମାଛରେ ଆମର ଅଧିକାର ନାହିଁ । ଲାଞ୍ଚ ନ ଦେଲେ, ଅମଲାମାନେ କାଗଜପତ୍ର କାମ କରୁନାହାନ୍ତି । ଏଥିରେ ଉପାୟ କଣ ? ଗତ କେତେଦିନ ତଳେ କ୍ଷେତ୍ରବାସୀ ବରାଳଙ୍କୁ ଗଛରେ ବାନ୍ଧି ପୋଲିସ ଦାରୁଗା ଦିଅନ ଥାଇ ମାଡ଼ ଦିଆଗଲା । ୧୪ କୋଶ ମୂଲକରେ ଯେ ସତ କଥା କହିବ, ତାଙ୍କୁ ସବୁ ଦଣ୍ଡ ଦିଆଯିବ ବୋଲି ହୁକୁମ ହୋଇଛି । ଆମ୍ଭେ ରାଜାଙ୍କ

ଛାମୁରେ ଅମ୍ଭ ଦୁଃଖ ଜଣାଇବା । ଆମେ ସଭା ସମିତି କରି
ଆମର ଦୁଃଖ ଅସୁବିଧା ଜଣାଇ ପ୍ରତିକାର ଦାବୀ କରିବା ।
ଏଥିରେ ଆପଣମାନଙ୍କର ସହାନୁଭୂତି ଦରକାର । ଆପଣମାନେ
ଆମ୍ଭମାନଙ୍କର ବଳ । ରଣପୁର ପ୍ରଜାମଣ୍ଡଳୀ ଆପଣମାନଙ୍କୁ ଗୁହାରି
କରିଛି । ପ୍ରଜାମଣ୍ଡଳର ସମସ୍ତ ନେତାଙ୍କୁ ଦଆନ ବନ୍ଦୀ କରି ନେବା
ପାଇଁ କଡ଼ା ହୁକୁମ ଦେଉଛନ୍ତି । ଅମ୍ଭମାନଙ୍କ ଧନ ଜୀବନ
ଉପରେ ବିପଦ ପଡ଼ିଛି । ଆପଣମାନେ କଣ ପ୍ରଜାମଣ୍ଡଳର ଡାକ
ଶୁଣିବେ ନାହିଁ । ଆସନ୍ତା କାଲି ହାଟ ପଡ଼ିଆରେ ସଭା ହେବ
ଆପଣମାନେ ବହୁତ ସଂଖ୍ୟାରେ ଯୋଗଦାନ କରି ଆପଣମାନଙ୍କ
ଜାତୀୟ ଆନ୍ଦୋଳନକୁ ସଫଳ କରନ୍ତୁ । ନିଜ ଆଖିରେ ନିଜେ
ଅବସ୍ଥା ଦେଖନ୍ତୁ । ଜାଗ୍ରତ ହୁଅନ୍ତୁ, ଉଠନ୍ତି ହୁଅନ୍ତୁ, ବର୍ତ୍ତମାନ
ବେଳ ଆସିଛି ।

ବାମ—ହଇରେ ନୀଳ, ଏ ସବୁ କଣ କହେ ?

ସହଦେବ—ତୋ ମୁଣ୍ଡରେ ତ ଖାଲି ଗୋବର ଅଛି ।;

ନୀଳ—(କାଗଜଟାକୁ ଗଛରୁ ଛଡ଼ାଇବା ଉପରେ)

ବାମ— ନାହିଁ ନାହିଁ ତୁ ସେ କାଗଜ ଛୁଅଁ ନା—

ନୀଳ—କଣ କାଗଜଟାରେ ପାପ ଲାଗିଛି ।

ବାମ—ଆରେ ସେ ପାଠରେ ପରା ପାପ ଲାଗିଛି ।

ସହଦେବ— ଏଇଥି ପାଇଁ ମୁଁ କହେ, ତୁ ଡରକୁଳିଆଟାଏ । ତୋ ହାତରେ
ଶାଗ ସିଝିବ ନାହିଁ । ଆମ ରଣପୁର ୧୪ କୋଶରୁ ଆମେ କଣ
ବାହାର । ଏତେ ଲୋକ, ଏତେ ପ୍ରଜାଙ୍କର କଥା, ଶୁଣିଲୁ
କ୍ଷେତ୍ରବାସୀ ବାଉଁଳ କଟରେ ହାଜତରେ ସଢ଼ୁଛି—

ବାମ—ଆରେ ଶେଷରେ ସିନା, 'ଆ ବଳଦ ମୋତେ ବାନ୍ଧ' ହେବ—

ନୀଳ—ଢୋକେ କହନ୍ତି, ମାଡ଼ଖିଆ ମାଧିଆ । ତୁ ଏକ ନମ୍ବର ବୁଦ୍ଧୁ ।
(କାଗଜଟା ଗଛରୁ ଝିଙ୍କିବା) ଏହି ସମୟରେ ଦୂରରେ କଣେ
ଯାତ୍ରୀ ଛତା ଧରି ଯାଉଥିବାର ଦେଖାଗଲା ।)

ବାମ—(ଗୃହଅଡ଼କୁ ଗୃହିଁ) ଅରେ ଭାଇ; ବେହଣୀ କଅଣ ମୁଣ୍ଡରେ କଏ ଜଣେ ଆସୁଛି କରେ...

ନୀଳ—(ଗୃହିଁବା) ଅରେ, ସିଏ ଆସୁଛି, ଆସୁ।

ବାମ—ଆମେତ ବଲକୁ ଯାଉଛେ—

ନୀଳ—କାହିଁକି, ଅମେତ ଏଠି ଠିଆ ହୋଇ ଖବର କାଗଜ ପଢୁଛେ—

ବାମ—ତୁ, ସେମିତ କହୁଲେ, ମୋର ବାଡ଼ ମୁଁ କାଟିବି—

ନୀଳ—ଆଉତ ପାର ହେବ ନାହିଁ—ସବୁବେଳେ ଡରୁଛ।

ବାମ—ନାହିଁରେ ଭାଇ, ରଜା ରାଇଜ, ଦଅନ ଦାଲୁଗାଙ୍କ ଅମଳ। କେତେବେଳେ କଣ ହାନି ଲାଭ ଥାଏ। ଶେଷରେ ସମସ୍ତେ ପିଳା ମରିବା—

ସହଦେବ—ମରିବାକୁ ତୋର ଭାରି ଭୟ—

ବାମ—( ପୁଣି ଗୃହ ଅଡ଼କୁ ଗୃହିଁ ) ମୁଁତ ସତ କଥା କହୁଛି। କାହାକୁ ମରିବାକୁ ସୁଖ ଲାଗେ। ପିଲାଟିଏ ହେଲେ ମଧ୍ୟ ତାର ପ୍ରାଣକୁ ଲୋଭ।

ନୀଳ—ତୁ ତ ତେବେ ପିଲା ( ଟିକିଏ ହସୁଗୁଲେଇ ) ଆମ ବାମ ଭାଇ ଭାରି ପିଲାଟାଏ। "ମା ଯାଇଛି ଗାଈ ଚରାଇ, ଆସିଲେ ପିଇବୁ ପେଟ ପୂରାଇ।"

ବାମ—ଏ ନୀଳ—ସେ ଲୋକ ଆସି ଗଲାମ।

ନୀଳ—ଆସୁ—ଆସୁ...

ବାମ—ଏ ନୀଳ, ରଜା ରାଇଜରେ ଘର କରି...

ସହଦେବ—ତୁ ଅଉ ରଜା ରାଇଜ, ରଜା ରାଇଜ ବୋଲି କହନା—

ନୀଳ—ଭାଇ, ବାମା ଭାଇ କଥା ଶୁଣି ଗରମ ଲାଗୁଛି—

ସହଦେବ—ନୀଳରେ, ଏ ଗଛ ତଳେ ଟିକିଏ ବସମ।...ବଡ଼ ଥଣ୍ଡା ଲାଗୁଛି।

ନୀଳ—(ଗଛ ତଳେ ବସିବାକୁ ଉଦ୍ୟତ)

ବାମ—ଭାଇ, ମୁଁ ଯାଉଛି। ତମେ ଏଠି ହାଉଆ ଖାଉଥା—

ମାଲ—ବାମା ଭାଇ, ତୁ ବସମ ! ଏଇକ୍ଷଣେ ଗାଁ ଗାଇଅଲ ଆସିବ ଯେ, ବଇଁଶି ଶୁଣିବା ।

ବାମ—ସତ କହୁଛୁ ଭାଇ, ମୋ ମନରେ ବଡ଼ ଦକ । ଏତେ ବଡ଼ କାଗଜଟାଏ ଏଠି ଛପା ହୋଇଛୁ, କଏ ଯଦ ଦେଖେ ଅମେ ସବୁ ଏ ଛପା କାଗଜ ପଢ଼ୁଛେ ତାହା ହେଲେ ଅମ ହଲ ବଲଦ ସବୁଯିବ । ଅମ ପିଠିରେ ପୋକ ପଡ଼ିବ ସିନା,

ମାଲ—ଅରେ ଦେଖ (କଣକୁ ମୋଡ଼ି) ଏ ଦାମ ସିଂହ ପୁଅ ମାଲ ସିଂହ—ଥିଲୁ ଯାଏଁ, ତୁ ଡରନା···

ବାମ—ତୁ ଥିବାରୁ ଟିକିଏ ସାହାସ ଲଗୁଛୁ ।

ସହଦେବ—ନଇଲେ ସବୁ, ଶେଷ ।

(ହେଇଟିତ ବାବୁ ଅସିଲେଣି, ବଂଶୀ କାଢ଼ି ବଜାଇବା)

ଏକ ସାଧାରଣ କର୍ମଚାରୀଙ୍କ ପ୍ରବେଶ । ନାମ ରତ୍ନାକର ସାହୁ—ହାତରେ ଖଣ୍ଡିଏ ବ୍ୟାଗ)

ସହଦେବ—ବଂଶୀ ସ୍ଥାନପ୍ରତି କାନ ଦେବା—

ବାମ—(ଧଇଁ ଅଢ଼ୁଆଳରେ ବସିବା) ।

ରତ୍ନାକର—କିରେ ଭାଇ; ଏ ଗାଁକୁ ଯିବାପାଇଁ ବାଟରେ ନଈ ପଡ଼ିବ ?

ମାଲୁ—ନଈ ପଡ଼ିବନି—ନାଲଟାଏ ପଡ଼ିବ ।

ରତ୍ନାକର—ତମେ ସବୁ କାହିଁକି ଏଠି ବସିଛ ?

ମାଲୁ—ଟିକିଏ ଛାଇ ତଳେ ବସି ଯାଇଛୁ ।

ବାମ—ଆମର ହଲ ସବୁଅଛି······

ସହଦେବ—ଭାଇ; ତମେ କୁଆଡ଼େ ଯିବ ।

ରତ୍ନାକର—ମୁଁ କୁଆଡ଼େ ଯିବି ? ମୁଁ ତ ସବୁଆଡ଼େ ଯାଉଛି ।

ସହଦେବ—ନାହିଁ ଭାଇ, ତମର କେଉଁ ଗାଁ···

ମାଲୁ—ତମେ ଭାଇ ବସୁନ ।

ସହଦେବ—(କାନରେ ଖୋସା ହୋଇଥିବା ବିଡ଼ି କାଢ଼ିବା)

ମାଲ—ଭାଇ ଖଣ୍ଡେ ହେବନି ?

ରତ୍ନାକର—ଭାଇ, ମୁଁ ବିଡ଼ି ଖାଏନି । ମିଳିଲେ ଟିକିଏ ପାନ ଖାଆନ୍ତି ।

ମାଲ—ଆମ ବାମା ଭାଇ ପାଖରେ ବଟୁଆ ଅଛି ।

ବାମା—(ବଟୁଆ କାଢ଼ି ପାନ ଭାଙ୍ଗିବା)

ମାଲ—ହଇଏ ଭାଇ, ଏ ଗଛରେ ସବୁ କାଗଜ ଛପା କାହିଁକି ମରା ହୋଇଛି କହିଲ ?

ରତ୍ନାକର—(ବିସ୍ମିତ ହୋଇ) ସତେତ କଣ ଗୁଡ଼ାଏ ଲେଖା ହୋଇଛି ।

ମାଲୁ—ଭାଇ ପଢ଼ୁନା ବଡ଼ ପାଟିରେ, ଆମେତ ମୂର୍ଖ ଲୋକ—

ରତ୍ନାକର—(କାଗଜକୁ ଗୁହିଁ ପଢ଼ିବା)—

ମାଲୁ—ପ୍ରଜାମଣ୍ଡଳ କଥା କଣ ଲେଖା ହୋଇଛି ।

ରତ୍ନାକର—ହଁ ଭାଇ, ସେହି ସଭା କଥା ଲେଖା ହୋଇଛି । ଆମ ଗାଁ ଅଢ଼େ ରଘୁ, ବାବୁ, ମିଶ୍ରେ, ଧନମାଳୀ ଗମ, ବଗଡ଼, ସବୁ ଯାଇଥିଲେ । ଲୋକଙ୍କୁ ବହୁତ ବୁଝେଇ ସୁଝେଇ ଆସିଛନ୍ତି । ହାଟ ପଡ଼ିଆରେ ସଭା ହେବ—

ବାମ—ତମେ ପ୍ରଜା ମଣ୍ଡଳକୁ ଦେଖିଛ ?

ରତ୍ନାକର—ଆମେ ସବୁ ମିଶି ପ୍ରଜାମଣ୍ଡଳ । ଜଣେ ଲୋକତ ପ୍ରଜାମଣ୍ଡଳ ନୁହେଁ ।

ବାମ—ମାଲୁତ କହୁଛି, ରଘୁଭାଇ, ବଗଡ଼ଭାଇ, ଧନମାଳୀ ଗମ, ସେନାପତି ଭାଇ, ପଦ ଦାସେ, ଏକାଠି ହୋଇ ତାଙ୍କର ପ୍ରଜାମଣ୍ଡଳ କରିଛନ୍ତି ।

ମାଲ—(ଭାରି ବିରକ୍ତ ହୋଇ) ତୁ ବଡ଼ ମୂର୍ଖଟାଏ । ତୋତେ ଏତେ ବୁଝେଇ ତୁ କିଛି ହେଲୁ ନାହିଁ । ଆରେ ମୁଁ ତ କହିଲି, ଆମର ପ୍ରଜାମଣ୍ଡଳ, ଆମେ ସବୁ ସେଥିରେ ଅଛେଁ ।

ବାମ—ନାଇଁ ନାଇଁ ମୁଁ ତ ସେଥିରେ ନାହିଁ ।

ରତ୍ନାକର—ଆରେ ଭାଇ, କଜିଆ କଲେ ସେମିତି ଚଳିବ ନାହିଁ...। (ବ୍ୟାଗରୁ କାଢ଼ି) [ହ୍ୟାଣ୍ଡବିଲ କାଗଜ ଦ'ଖଣ୍ଡ ଦେବା] ଏ କାଗଜ ନିଅ । କାହାକୁ କହିବ ନାହିଁ । ଗାଁରେ ସମସ୍ତଙ୍କୁ ଏ କାଗଜ ପଢ଼ି ଶୁଣାଇ ଦେବ ।

ମାଲୁ—ଏ କାଗଜ କେଉଁଠୁ ଆସିଛି ?

ରତ୍ନାକର—ଏ କାଗଜ କଟକରୁ ଆସିଛି । ଜହରଲାଲ ନେହେରୁ ନିଜେ ପଠାଇଛନ୍ତି । ତମେ କାହାକୁ ଏ କଥା କହିବ ନାହିଁ ।
(ବୁଲେଟିନ ଖଣ୍ଡେ ଦ'ଟଖଣ୍ଡ ନିଜେ ଗଛ ଦେହରେ ଅଠା ଦେଇ ମାରିଦେବା) ହଉ ଭାଇ ମୁଁ ଯାଉଛି । ସଞ୍ଜ କଥା ତୁମକୁ ଲାଗିଲା (ପ୍ରସ୍ଥାନ)

ଶ୍ରୀକୃ—(ସେଇଠି ବସି) ବଂଶୀ ବଜାଇବା—
( ଦୂରରେ ବଂଶୀ ସ୍ୱନ ଶୁଣାଗଲା । )

ବାମ—ଗାଁ ଗାଈଗୋଠ ଆସିଲେଣି । ଗୃହଲେଉଟିବା ବେଳ ହୋଇଗଲା ।
(ତିନହେଁ ଆଗ ପଛ ହୋଇ ଗୃହଲେଉଟିବା)
ପ୍ରାୟ ପାଞ୍ଚ ମିନିଟ ପରେ, ବିପରୀତ ଦିଗରୁ କପିଳ ପାଣ୍ଡେ ଓ ଜଣେ ଚୌକିଦାରର ପ୍ରବେଶ, ନାଁ ତାର ବେଙ୍ଗୁ ମଲିକ ]

କପିଳ ପାଣ୍ଡେ—(ଗଛକୁ ଦେଖି ଚମକି ଉଠି) କରେ ଶଳା, ଏଠି ପୁଣି କିଏ କାଗଜ ଛପା ମାରିଲା ? ଜାଣିଲୁ ବେଙ୍ଗୁଆ ବାବୁ ରହିବନି ଏ ନିମକହାରାମ ଗୁଡ଼ାଙ୍କୁ ପାରି ହବନି—ଏ ନିମକହାରାମ-ଗୁଡ଼ାଙ୍କୁ ପାରି ହବନି—

ବେଙ୍ଗୁଆ—କାହିଁକି ଆଜ୍ଞା କଣ ହେଲା ?

କପିଳ ପାଣ୍ଡେ—(ଗଣମା ଭିତରୁ ଖୁବ୍ ରାଗରେ ବେଙ୍ଗୁଆକୁ ଗୃହିବା) ତୁ ମଧ୍ୟ ଓଲୁ ।

ବେଙ୍ଗୁଆ—ହାକିମ କଣ ହେଲା ?

କପିଳ—ଆରେ ଏ ଗଛ ଦେହରେ କଣ ଲେଖା ହୋଇଛି ଦେଖେ । କାଲି ସଞ୍ଜ ହେବ । ଧନମାଳୀ ରାମ, ମିଶ୍ର, ପଦନ ଦାସଠ ରସହିକିଲ ନାଗିବ । ନିମକହାରାମ ଦଳ ।

ବେଙ୍ଗୁଆ—ବାବୁ ମୁଁ ତ ମୂର୍ଖ ଲୋକ; ମୁଁ କଣ ଜାଣୁଛି ।

କପିଳ ପାଣ୍ଡେ—ଆରେ ଏହି କାଗଜରେ ଗେଜେଟ ମାର୍କା ହୋଇଛି ।

ବେଙ୍ଗୁ—ବାବୁ ଅମେ କଣ ଗେଜେଟ ମାର୍କା ଜାଣିବୁ ।

କପିଳ ପାଣ୍ଡେ—ଏଇଠି ଗଛ ଦେହରେ ଗେଜେଟରେ ସବୁ କଥା ଉଠୁଛି ।

ବେଙ୍ଗୁ—ଏତେ ବଡ଼ କଥା—

କପିଳ ପାଢ଼—(ସଜିପାଇ) ବେଙ୍ଗୁଆ, ତମା ବେଟ୍ ଖଣ୍ଡକ ଆଣିବୁଟି—
ବେଙ୍ଗୁ—(ବେଗ୍ ଖଣ୍ଡକ ଆଣି ଥୋଇବା)
କପିଳ ପାଢ଼—(ବେଗ୍ ଭିତରୁ କାଗଜ ପେନ୍‌ସିଲ କାଢ଼ିବା) ବେଙ୍ଗୁଆ,
ଏ ଗଛ ଦେହରୁ କାଗଜ ଗୁଡ଼ାକ ଚିରି ଦେବୁଟି ।
ବେଙ୍ଗୁଆ—(କାଗଜ ଚିରିବା)
କପିଳ ପାଢ଼—ରଘୁ, ଅଜ ଗାଁବାଲାଙ୍କ ନାଁରେ, ଥାନାକୁ ରିପୋର୍ଟ କରୁଛି । ତୁ ମନେରଖ, ଏଇ ଥାନଟା, ଏଇ ସବୁ ଗଛ ମନେ ରଖ, ରିପୋର୍ଟ ଲାଗିଯିବ ଯେ ।

( ପ୍ରସ୍ଥାନ )

## ଦ୍ୱିତୀୟ ଅଙ୍କ ଦ୍ୱିତୀୟ ଦୃଶ୍ୟ—

(ବିସ୍ତୀର୍ଣ୍ଣ ପ୍ରାନ୍ତର—ସଭା ହେଉଛି—ବହୁ ଲୋକ ଜମା ହୋଇ-ଛନ୍ତି । ତିରଙ୍ଗା ପତାକା ଉଡ଼ୁଛି—ନାଲି ପଗଡ଼ି ପୋଲିସ ଜଣେ ଢୁଇ-ଜଣ ବସିଛନ୍ତି । ଲୋକାରଣ୍ୟ—ସଭାପତି ଧନମାଳୀ ସାମ । କରତାଳି ଧ୍ୱନି ମଧ୍ୟରେ ରଘୁ ମହାନ୍ତି କହୁଛନ୍ତି)

ରଘୁ—ଭାଇ ଓ ଭଉଣୀମାନେ, ଆଜି ଆପଣମାନଙ୍କୁ ଆମର ଏହି ପ୍ରଜାମଣ୍ଡଳ ପକ୍ଷରୁ ପ୍ରଥମେ ସମ୍ବର୍ଦ୍ଧନା ଜଣାଉଛି । ଆଜି ଆପଣମାନେ ଏତେ ସଂଖ୍ୟାରେ ଯୋଗ ଦେଇ ପ୍ରଜାମଣ୍ଡଳର ଗୌରବ ରଖିଥିବାରୁ, ବାସ୍ତବିକ୍ ମୁଁ ବଡ଼ ଆମୋଦିତ ହୋଇ ପଡ଼ୁଛି । ଆମର ସଭାପତି ଧନମାଳୀ ସାମ ଏବଂ ଅନ୍ୟାନ୍ୟ କର୍ମୀ ଶ୍ରୀଯୁକ୍ତ ମିଶ୍ରେ—ଦାସେ, ସେନାପତି ପ୍ରଭୃତି ଆଜି ପ୍ରଜାମଣ୍ଡଳର ଦାବୀ ପୂରଣ ନିମିତ୍ତ ବଦ୍ଧପରିକର ।

ଆମର ଏହି ଅଭ୍ୟାଗୃହ ମୂଳକରେ ଆପଣମାନେ ହିଁ ଆଶା ଓ ଆଶ୍ୱାସନାର ଆଲୋକ ଦୀପ ଜାଳି ରଖିବେ । ଯେଉଁ ଭୂମିରେ ମୈନାକପର୍ବତ ତରଣ୍ୟାମାୟୂମାନ, ସୌନ୍ଦର୍ଯ୍ୟରେ ହୃଦୟ ମଳୟଗୁଣୀ ।

ଚକ୍ରବାଳ ତଳେ ଗୃହୀର ସୁନା ଧାନ କ୍ଷେତ ଭରିଛି଼ ପକ୍ଷୀ ସ୍ୱନରେ ଉଚ୍ଛ୍ୱସିତ ହୁଏ, ଯେଉଁ ଭୂମିରେ ଗୃହୀ ଖଟି ଖଟି ସୁନାର ସଂସାର ଗଢ଼େ—ସେହି ମାଟିର ପ୍ରଜାମାନଙ୍କର ଏହି ଦୁଃଖ ଦୁର୍ଦ୍ଦଶା କାହିଁକି ?

ଆମ୍ଭମାନଙ୍କର କହିବାର ଅଧିକାର ନାହିଁ । ଆମ୍ଭମାନଙ୍କ ଉପରେ ଦେଓ୍ୱାନ ଦାରୋଗାଙ୍କର ଅତ୍ୟାଚାର ଲାଗିରହିଛି । ଆମ୍ଭମାନଙ୍କର ଦାବୀନାହିଁ—ଅଥଚ ଷ୍ଟେଟର ସମସ୍ତ ରାଜସ୍ୱ ଭାର ଆମ ଉପରେ । ଆମ୍ଭମାନଙ୍କର କଣ୍ଠ ରୋଧକରି ଦିଆଯାଇଛି । ଆମ୍ଭେମାନେ ସୁପ୍ତ—ପତିତ—ନିର୍ଯ୍ୟାତିତ—!

"ଯଦା ଯଦାହି ଗ୍ଳାନି ଭବତି

ଭାରତରେ ପୂତ ପବିତ୍ର କଂଗ୍ରେସ ଆନ୍ଦୋଳନ ମହାତ୍ମା ଗାନ୍ଧୀଙ୍କର ନେତୃତ୍ୱରେ ସ୍ଥାପିତ ହେଲା । ସୁଦୀର୍ଘ ଲାହୋର କଂଗ୍ରେସ ଅଧିବେଶନ ଭାରତକୁ ପୂର୍ଣ୍ଣ ସ୍ୱାଧୀନମୁଖୀ କରିବାକୁ ସଂକଳ୍ପ ଗ୍ରହଣ କଲା । ଆଜି ଆମ୍ଭମାନଙ୍କ ଆଗରେ ଦୁଇଟି କଥା, ଏକଦିଗରେ ସ୍ୱର୍ଗ, ଅନ୍ୟ ଦିଗରେ ନର୍କ, ଏକ ଦିଗରେ ସ୍ୱାଧୀନତାର ଅମୃତ ଆସ୍ୱାଦନ ଅନ୍ୟ ଦିଗରେ ପରାଧୀନତା ମୃତ୍ୟୁ, ଧ୍ୱଂସ ପତନ···ଏକ ଦିଗରେ ଘନ ଅନ୍ଧକାର, ଅନ୍ୟ ଦିଗରେ, ଚିର ଉଜ୍ଜ୍ୱଳ ଝଲକଧାରି ନୂତନ ବାର୍ତ୍ତା ବକ୍ଷେର ଉଷାର ଶୁଭ୍ରାଲୋକ ।

ସେହି ବିରାଟ ଝଣ୍ଡାର ନିର୍ଦ୍ଦେଶରେ ଆମ୍ଭେମାନେ ଆଜି ଏକତ୍ରିତ ହୋଇଛୁ । ମହାତ୍ମାଗାନ୍ଧି ଆମ୍ଭମାନର ପ୍ରେରଣା । କଂଗ୍ରେସ ଆମର ବଳ—ଜହରଲାଲ ଆମର ଅଗ୍ରଦୂତ । ସେହି ଜନନାୟକଙ୍କ ନିର୍ଦ୍ଦେଶରେ ବନ୍ଧନ ଧର ନିଷ୍ପେଷିତ, ନିପୀଡ଼ିତ ଅତ୍ୟାଚାରିତ ଗଡ଼ଜାତ ଭୂମିର ମୁକ୍ତି ନିମିତ୍ତ ପୂଣ୍ୟ ପ୍ରଜାମଣ୍ଡଳ ଗଢ଼ା ଯାଇଛି ।

ମଣିପର ନିଜ ହାତରେ ନିଜର ମୁକ୍ତି ଥାଏ । ଇଂରେଜ ଶାସକମାନଙ୍କ ଅଧୀନରେ ଆମର ପୂର୍ବକାଳର ରାଜା ମହାରାଜା-ପୃଷ୍ଠରୂପରେ ଇଂରେଜ ପାଲଟି ଗଲେଣି । ଆମର ପଇସାରେ ଆମରି ରକ୍ତରେ ଆଜି ରାଜାମାନେ ହୋରି ଖେଳୁଛନ୍ତି ।

ଆଜି ଗଡ଼ଜାତମାନଙ୍କରେ ଅନାଚାର ଶାସନ ଚାଲିଛି । ଦେଓ୍ୱାନ ଦାରୋଗାର ଶାସନ······

ତେଣୁ ଭାଇମାନେ—ଧୈର୍ଯ୍ୟକର, ପ୍ରତିଜ୍ଞାକର, ଶପଥକର, ଦାବୀକର ତୁମମାନଙ୍କର ଅନ୍ତର ନିନାଦରେ ଶତ ମୈନାକ, ମଲୟଗିରି ମୁଖରିତ ହେଉ । ଅନାଚାର ଶାସନ ଏ ଦେଶରୁ ଲୋପ ପାଉ ।

ଉଠ, ଜାଗ, ଶପଥ ନିଅ, ତୁମମାନଙ୍କ ହୃଦୟର ରକ୍ତରେ ଜାତୀୟ ପ୍ରଜାମଣ୍ଡଳର ଇତିହାସ ପୁଷ୍ଟ ହେଉ । ମୃତ୍ୟୁ କାରାଗାର, ନିର୍ଯ୍ୟାତନା ଆମ୍ଭମାନଙ୍କର ପୁରସ୍କାର ହେଉ । ଆମକୁ ଆଗେଇ ଚାଲିବାକୁ ହେବ ।

ଆମ୍ଭମାନଙ୍କର ନିଦ ଭାଙ୍ଗୁ, ଆମ୍ଭମାନଙ୍କ ଜାତୀୟ ସଂଗ୍ରାମ ସାଧନାରେ ପରିଣତ ହେଉ ।

ବୋଲ ଭାଇମାନେ ବନ୍ଦେ······

ଜନତା—ମାତରଂ ।

ରଘୁ—ବନ୍ଦେ

ଜନତା—ମାତରଂ ।

ରଘୁ—କୁହ ଭାଇମାନେ, ସଂଗ୍ରାମ କାହାର

ଜନତା—ଆମ୍ଭମାନଙ୍କର

ରଘୁ—ଏ ବିପ୍ଳବ

ଜନତା—ପ୍ରଜାମଣ୍ଡଳର

ରଘୁ—ବୋଲ ଭାଇମାନେ ମହାତ୍ମା ଗାନ୍ଧୀଙ୍କି

ଜନତା—ଜୟ···ଜୟ

ରଘୁ—ଦଲାଲ ଶାସନ

ଜନତା—ଧ୍ୱଂସ ହେଉ
ରଘୁ—ମିଥ୍ୟା ସଜ୍ଜୁଡ଼ି
ଜନତା—ଧ୍ୱଂସ ହେଉ
ରଘୁ—ସତ୍ୟ ଅହିଂସାକୁ
ଜନତା—ଜୟ
ରଘୁ—ଭାରତ ମାତାକୁ
ଜନତା—ଜୟ
ରଘୁ—ଗଡ଼ଜାତ ପ୍ରଜାମଣ୍ଡଳକୁ
ଜନତା—ଜୟ ।

( ରଘୁ ମହାନ୍ତି ଘନ ଘନ କରତାଳି ମଧ୍ୟରେ ବସିବା )

ସିନ୍ଧୁ ମିଶ୍ର—ରଘୁବାବୁ ଆପଣମାନଙ୍କୁ ସବୁ ବୁଝାଇ କହିଛନ୍ତି । ଆପଣମାନଙ୍କୁ କହୁଛି—ଆମ୍ଭମାନଙ୍କର ସଂକଳ୍ପ ହେଉଛି ପୂର୍ଣ୍ଣ ଅହିଂସା । ମହାପୁରୁଷ ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ସତ୍ୟ ଆଦର୍ଶ ଏକମାତ୍ର ସମ୍ବଳ । ଆଜି ସାରା ଭାରତରେ ମହାତ୍ମାଙ୍କ ନେତୃତ୍ୱରେ ଏହି ତିରଙ୍ଗା ପତାକା ତଳେ ଆମେମାନେ ରୁଣ୍ଡ । ସ୍ୱାଧୀନତା ପାଇଁ ଆମକୁ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ ।

ଅନନ୍ତ ବରାଳ—ଭାଇମାନେ, ମୁଁ ଆପଣମାନଙ୍କୁ ପ୍ରାର୍ଥନା କରୁଛି ଯେ, ଆପଣମାନେ କଂଗ୍ରେସର ଶପଥ ଗ୍ରହଣ କରନ୍ତୁ । ପ୍ରତ୍ୟେକ କଂଗ୍ରେସର ସଭ୍ୟ ହୁଅନ୍ତୁ । ପ୍ରଜାମାନଙ୍କର ଦାବୀ ହାସଲ କରିବାକୁ ହେଲେ ଆମ୍ଭମାନଙ୍କୁ ନ୍ୟାୟମାର୍ଗରେ ସାଧନା କରିବାକୁ ପଡ଼ିବ । ଆମ୍ଭମାନଙ୍କୁ ବହୁତ କଷ୍ଟ ସହ୍ୟକରିବାକୁ ପଡ଼ିବ ।

ଯେ କୌଣସି ଦେଶ ଓ ଜାତିକୁ ଧ୍ୱଂସ ମୁହଁରୁ ରକ୍ଷା କରିବାକୁ ହେଲେ ତାର ସ୍ୱାଧୀନତା ଲୋଡ଼ା । ମହାତ୍ମା ଗାନ୍ଧୀ ଯେଉଁ ଆନ୍ଦୋଳନ ଆରମ୍ଭ କରିଛନ୍ତି, ତାହା ଏହି ପ୍ରାଚୀନ ଭୂଙ୍ଗ ଆଦ୍ୟ ଭାରତର ସ୍ୱାଧୀନତା ଓ ସ୍ୱରାଜ କମିଉ । ମହାତ୍ମା ଗାନ୍ଧୀଙ୍କର ଏହି ସ୍ୱରାଜ ସଂଗ୍ରାମରେ ଅସ୍ତ୍ରଶସ୍ତ୍ର କିଛି ନାହିଁ ।

ଅହିଂସା ହେଉଛି ତାଙ୍କର ଅସ୍ତ୍ରଶସ୍ତ୍ର । ଭ୍ରାତୃପ୍ରେମ ତାଙ୍କର ପ୍ରଧାନ ବାଣୀ । ଅସହଯୋଗ ବଳରେ ମହାତ୍ମା ଗାନ୍ଧୀ ଭାରତର ସ୍ୱରାଜ ଫେରାଇ ଆଣିବାକୁ ସଂକଳ୍ପ କରିଛନ୍ତି । ଆପଣମାନେ ମହାତ୍ମା ଗାନ୍ଧୀଙ୍କୁ ଅନୁସରଣ କରି ଆଜି ଆମର ପ୍ରଜାମଣ୍ଡଳ ପୀଠରେ ଏକନିଷ୍ଠ ଏକତା ଦ୍ୱାରା ଆରେ ନିଜର ସ୍ୱାଧୀନତା ଆଣିପାରିବା ।

ମଦନ ଦାସ—ଭାଇମାନେ ଯେଉଁମାନେ ଆମ୍ଭମାନଙ୍କୁ ଭୟ ଧମକ ଦେଖାଉଛନ୍ତି, ସେହିମାନେ ଅନ୍ତର ମଧ୍ୟରେ ଭଲକରି ବୁଝନ୍ତୁ ଆମ୍ଭେମାନେ କାହା ପାଇଁ ସ୍ୱରାଜ ସଂଗ୍ରାମ ଚଳାଇଛୁ । ମହାତ୍ମା ଗାନ୍ଧୀ କାହିଁକି ଜୀବନ ଉତ୍ସର୍ଗ କରି କଂଗ୍ରେସର ଆଦର୍ଶ ପ୍ରଚାର କରୁଛନ୍ତି । ପ୍ରଜାମଣ୍ଡଳର ଉଦ୍ଦେଶ୍ୟ ଗଡ଼ଜାତ ଅଞ୍ଚଳରୁ ମୂଳକରୁ ଅନ୍ୟାୟ ଶୋଷଣ ଦୂର କରି ସ୍ୱାୟତ୍ତ ଶାସନ ସ୍ଥାପନ କରିବା ଏବଂ ଇଂରେଜ ଶାସନକୁ ଭାରତରୁ ଲୋପ କରିବା । ତେଣୁ ଏହି ଅନୁଷ୍ଠାନକୁ ଆମେ ସମସ୍ତେ ଏକ ପ୍ରାଣରେ ସାହାଯ୍ୟ କରିବା । (ବସିବା)

(ଏହା ପରେ ସମସ୍ତେ ସଭାପତି ମହାଶୟ ଉଠିଲେ)

ସଭାପତି—ଭାଇମାନେ ସମସ୍ତେ ହୁଏ କରୁଛନ୍ତି, "ଏହି ସ୍ୱାଧୀନତାଟା କଣ, ଏହା ଗଛ କି ମାଛ—ଏଇଟା କି ପ୍ରକାର ପଦାର୍ଥ—" ସାମାନ୍ୟ କଥାଟିଏ ମୁଁ କହିବି—ଗୋଟିଏ ପକ୍ଷୀ ପଂଜୁରୀ ଭିତରେ ସୁନା ଜଂଜିର ପିନ୍ଧିଅଛି । ତାକୁ ସଦାବେଳେ ଫଳମୂଳ ଦିଆଯାଉଛି । ଆଉ ଗୋଟିଏ ପକ୍ଷୀ ବଣରେ ପାହାଡ଼ରେ ବୁଲୁଛି—ନିଜ ପାଇଁ ଆହାର ଖୋଜି ଆଣୁଛି—ପାଣି ପବନରେ ଦେଂଜୁଛି । ଏ ଦୁଇଟି ପକ୍ଷୀ ମଧ୍ୟରୁ ପ୍ରକୃତରେ ସୁଖୀ କେଉଁ ପକ୍ଷୀଟି । ପ୍ରଥମ ପକ୍ଷୀଟି କଦାପି ସୁଖୀ ନୁହେଁ, କାରଣ ତା ପାଦରେ ସୁନା ଶିକୁଳି । ଦ୍ୱିତୀୟ ପକ୍ଷୀଟି ନିଶ୍ଚୟ ସୁଖୀ । କାରଣ ତାର ସ୍ୱାଧୀନତା ଟିକକ ଅଛି ।

ଜାତିର ବା ମଣିଷର ଏହି ସ୍ୱାଧୀନତା ଟିକକ ନ ଥିଲେ କି ଦୁଃଖ ଦୁର୍ଦ୍ଦଶା ଘୋଟିଆସେ, ତାହା ଆମର ଏହି ଅଞ୍ଚଳ

ମୂଲକରେ ସମସ୍ତେ ଅନୁଭବ କରୁଛନ୍ତି । ସ୍ୱାଧୀନତାର ଇତିହାସ ତେଣୁ ଅସୀମ ତ୍ୟାଗରେ ମହିମାନ୍ୱିତ । ସ୍ୱାଧୀନତାର ସାଧନା ମଧ୍ୟ ବିଷମ ପରୀକ୍ଷା । ତେଣୁ ମୁଁ ଆପଣମାନଙ୍କୁ କହିରଖୁଛି ଯେ—
"ଦୁର୍ଗମ ପଥ ଏ ଭଜନ ଭୟେ ଭାଙ୍ଗିଲେ ଯୋଗୀ ଜନ ।"

ଆପଣମାନଙ୍କର କର୍ତ୍ତବ୍ୟ କଣ ? ଆମର ଏହି ପ୍ରଜାମଣ୍ଡଳ ଉପରେ ଅମଲାମାନେ ସମସ୍ତେ ବିରକ୍ତ । ମାତ୍ର ଏହି ପ୍ରଜାମଣ୍ଡଳ କାହାରି ବିରୁଦ୍ଧରେ ନୁହେଁ । ଏହା ଅତ୍ୟାଚାର ଶାସନ ବିରୁଦ୍ଧରେ ।

ଆମ ଦେଶରେ ଦିନେ ରାମରାଜ୍ୟ ଥିଲା । ସାମାନ୍ୟ ଧୋବଣୀର ରଚନା ଶୁଣି ପ୍ରଜାବତ୍ସଳ ମହାପ୍ରଭୁ ଶ୍ରୀ ରାମଚନ୍ଦ୍ର କଣ ତ୍ୟାଗ କରି ନ ଥିଲେ ? ସେଥିପାଇଁ ବନ୍ଧରେ ଗୁଣ୍ଡିଚ ମୁଷା ବାଲି ଝାଡ଼ିଲା ପରି ପ୍ରତି ଗାଁର ପ୍ରତ୍ୟେକ ଲୋକ ପ୍ରଜାମଣ୍ଡଳର ସଭ୍ୟ ହୁଅନ୍ତୁ ।

ଜଣେ ବ୍ୟକ୍ତି—ସଭାପତି ବାବୁ, ଆମ ଦେଶରୁ ବେଠି ଛାଡ଼ ହେବନି ।

ସଭାପତି—ହଁ । ଆମର ଦାବୀ ପତ୍ର ଲେଖାଯାଉଛି, ସେଥିରେ ଆମେ ସ୍ପଷ୍ଟ ସବୁ ଦାବୀ ଆଗତ କରୁଛୁ ।

୨ୟ ବ୍ୟକ୍ତି—ଆଜ୍ଞା ଆମକୁ ଦାରୋଗା ଧମକ ଦେଖାଉଛନ୍ତି···

ସଭାପତି—ତଥାପି ଆପଣମାନେ ଧୀର ସ୍ଥିର ହେବେ—

୨ୟ ବ୍ୟକ୍ତି—ମାଡ ଦେଉଛନ୍ତି, ଭୟ ଦେଖାଉଛନ୍ତି ।

ସଭାପତି—ସବୁ ସହି ଯାଅନ୍ତୁ—

ପ୍ରଥମ ମଫସଲ—ସହିବାପାଇଁ କଣ ଆମେ ଜନ୍ମ ହୋଇଛେ···

ସଭାପତି—ସହିଲେ ମଣିଷ ବଡ ହୁଏ ।

୨ୟ ବ୍ୟକ୍ତି—ଆମେ ସବୁ ସହିବା (ଲୋକଙ୍କୁ ଉଦ୍ଦେଶ୍ୟ କରି) ଏ ରାଜା ରାଇଜରେ କଣ ହେଉଛି ହେଉ ।

( ପ୍ରଜାମଣ୍ଡଳର ଜୟଧ୍ୱନୀ ମଧ୍ୟରେ ସଭା ଭଙ୍ଗ ହେଲା )

## ୨ୟ ଅଙ୍କ

## ତୃତୀୟ ଦୃଶ୍ୟ

( ରାଜାଙ୍କ ପ୍ରାସାଦ—ଗୋଟିଏ କକ୍ଷ—ସାଜ ସଜ୍ଜା ଉନ୍ନତ ଧରଣର ରାଜାଙ୍କର ଶିରୋଦେଶରେ ପଙ୍ଖା—ଚମତ୍କାର ଯୋଜନା—ବିଳାସ ସବୁ ଏକାଠି ହୋଇଛି । ସିନ ଉଠିଲା ବେଳକୁ ବୃଦ୍ଧରାଜା ସମାସୀନ ଏବଂ ତାଙ୍କୁ ମଦ୍ୟ ପାତ୍ର ଧରି ପିଆଉଛନ୍ତି ଏକ ତରୁଣୀ ରୂପସୀ । ନାମ ତାଙ୍କର କରବୀ ।

ସିନ ଉଠିଲା—

କରବୀ—ହଜୁର ଆଉ ଟିକିଏ ପିଇଦଅନ୍ତୁ—(ନାଲ ନୀଳ ମଦପାତ୍ର)

ବୃଦ୍ଧ—ନାହିଁ ନାହିଁ, ଏହି ଲଗେ ପରାମର୍ଶ ଦରବାର ବସିବ । ଦେଓ୍ୱାନ ଦାରୋଗା ସମସ୍ତେ ଆସିବେ ।

କରବୀ—ଆପଣଙ୍କର ଦେହ···?

ବୃଦ୍ଧ—କାହିଁ କଣ ମୋ ଦେହ (ଦେହକୁ ଚାହିଁ) ମୁଁ ପୂର୍ବପରି ବେଶ ଆରାମରେ ଅଛି । (ଟିକିଏ କାଶିବା)

କରବୀ—କାଶତ ପୁଣି ହେଉଛି । ହେଇ କଅନ୍ତୁ ଆଉ ଟିକିଏ ପିଇ ଦଅନ୍ତୁ ।

ବୃଦ୍ଧ—ଆ, ପାଖରେ ଟିକିଏ ବସ (ରାଣିପାଖରେ ବସାଇବା) କେତେ ଦିନ ହେଲା ତୋ ସାଙ୍ଗରେ କଥାବାର୍ତ୍ତା ହୋଇନି—

କରବୀ—(ବୃଦ୍ଧ ରାଜାଙ୍କ ପାଖରେ ବସି) ଆପଣ କାହିଁକି ଆଗପରି ଏବେ କିଛି ରାଜ କାର୍ଯ୍ୟ ବୁଝୁନାହାନ୍ତି ?

ବୃଦ୍ଧ—(ହୁକା ଟାଣୁ ଟାଣୁ) ଦେଓ୍ୱାନ ତ ଅଛନ୍ତି......ଅମଲା କର୍ମଚାରୀ ଅଛନ୍ତି ।

କରବୀ—ତଥାପି ନିଜ ଦୃଷ୍ଟି ନ ଥିଲେ······

ବୃଦ୍ଧ—ସେଥିରେ ଯାଏ ଆସେ ନାହିଁ (ହୁକା ଟାଣୁ ଟାଣୁ) ଟିକିଏ ମନେ ହେଉଛ ହେଉଛ—) ହଇଲେ କରବୀ ଉଆସ ତୋଲା କେତେଦୂର ଗଲା—

କରବୀ—ଆପଣତ କିଛି ହୁକୁମ ଦେଲେନି, ଆଉ କଣ ହୋଇଥାଆନ୍ତା ।

ବୃଦ୍ଧ—ସେଇଠା ତୋ ନାଁରେ କସମିବ । ତୋଲା ସରିଯାଉ, ମୁଁ ତୋର ଥିଲେ......

କରବୀ—କଥା କେବଳ କଥାରେ ରହିବ ସିନା...

ବୃଦ୍ଧ—ନାଇଁଲେ ପାଗଳୀ, ତୁ ମୋ କଥା ବୁଝୁ...(ବାହାରେ ଏହି ସମୟରେ ପଦ ଧ୍ୱନି ଶୁଣାଗଲା)

କରବୀ—ମୁଁ ଦେଖିଆସେ...(କରବୀ ବାହାରକୁ ଗଲା, ବୃଦ୍ଧ ହୁକା ଟାଣିବା )

(ସଙ୍ଗେ ସଙ୍ଗେ କରବୀର ପ୍ରତ୍ୟାବର୍ତ୍ତନ)

ବୃଦ୍ଧ—କିଏ ସେ ?

କରବୀ—ପୋଇଲି ସୀତା ଆସିଛି । ଆପଣଙ୍କ ଶ୍ରୀଚରଣ ଦର୍ଶନ ନିମନ୍ତେ ।

ବୃଦ୍ଧ ରଜା—(ରାଗହୋଇ) ତାକୁ ଶୀଘ୍ର ତଡ଼, ଶୀଘ୍ର ତଡ଼ ତାକୁ...କିଏ କହିଲା, ଏଠିକି ଆସିବାକୁ ?

କରବୀ—ସେ ପରା ଶ୍ରୀଚରଣ ଦର୍ଶନ କରିବାକୁ......

ବୃଦ୍ଧ—(ଖତେଇହେବା) ଦ...ର୍ଶ...ନ ? ହଉ ଡାକ, ଡାକ, କହିଦେ ଆସିବାକୁ । [କରବୀ ସଙ୍ଗେ ସୀତାର ପ୍ରବେଶ, ସୀତା ହାତରେ ଧୂପ, ଚନ୍ଦନ, ଫୁଲମାଳ, ସୀତା ବୃଦ୍ଧରଜାଙ୍କ ପଦ ପଖାଳି, ପାଦ ସେବା କରିବା । କରବୀ ନ ଜାଣିଲା ପରି ଟେବୁଲଉପରେ ଫୁଲଦାନି ସଜାଉଥାଏ ]

ବୃଦ୍ଧ—ହଉ, ରହିଲ ଯା (ସୀତାପ୍ରତି)

ସୀତା—(ମୁଣ୍ଡିଆମାରି ଧୀରେ ଧୀରେ ଫେରିଯିବା)

କରବୀ—ଆଜି ଦରବାର ବସିବ ?

ବୃଦ୍ଧ—ହଁ ଲୋ ପାଗଳୀ—

କରବୀ—କଯୋଗିଆ ସବୁ ଆସିଲେଣି ?
ବୃଦ୍ଧ—ତୋ ପାଠପଢା କେତେଦୂର ଗଲା
କରବୀ—ଭଲ ଭାବେ ଶିଖିଗଲିଣି ।
ବୃଦ୍ଧ—ସାହେବ ସାଥିରେ ତାଳଦେଇ ପାରୁଛି ?
କରବୀ—ସାହେବ ଅଛୁ; ଯେ ଅଛୁ, କରବୀ କଣ ପାଠରେ ହାରିଯିବ ?
ବୃଦ୍ଧ—(ହୁକା ଟାଣିବା) ଅଲେ ସେହି ଟ୍ରେକ୍ସେରଟା ଫିଟାଇଲୁ ?
କରବୀ—(ଟ୍ରେଜେରୀ ଫିଟାଇବା)
ବୃଦ୍ଧ—ସେହି ବଡ ହାରଟା ଆଣ ?
କରବୀ—(ସୁନା ପଦକ ଖଞ୍ଜା ବଡ ହାର ଆଣିବା)
ବୃଦ୍ଧ—ଦେ, ମୋତେ···(ରଜା ମାଳ ଧରିବା)
କରବୀ—ଏ ସବୁ କାହିଁକି ବାହାରିଲା ?
ବୃଦ୍ଧ—ତୋର ଆଜି ଜନ୍ମଦନ, ପାଖକୁ ଆ ।
କରବୀ—(ପାଖକୁ ଲାଗି ଠିଆ ହେବା)
ବୃଦ୍ଧ—(ଗଳାରେ ମାଳଟି ଲମ୍ବାଇ ଦେଇ) ଏଇ ତୋର ଆଜି ଦନର
ପୁରସ୍କାର ।
କରବୀ—ନାହିଁ (ଚୁପ୍ କରି ଠିଆ ହେବା)
ବୃଦ୍ଧ—ମନେରଖ କରୁ—ମୁଁ ପୁଣି ଗନ୍ତାଘରୁ ଆଣାଇ ଦେବି ।···
(ବାହାରେ ପଦ ଶବ୍ଦ) ଦେଖିଲୁ, ବଳବନ୍ତରାୟ ଆସିଲେକି ?
[ବଳବନ୍ତରାଇର ପ୍ରବେଶ, ହାତରେ ସୁନା ଖଡୁ, ସିଲକ୍ ଧୋତି ଚଦର ପିନ୍ଧା ବେକରେ ମାଳ—ବାବୁରି ବାଳ । ସଦ୍ୟ ଗୋଲାପ ଫୁଲ ତୋଡାଟିଏ ଆଣି ରଜାଙ୍କୁ ଭେଟି ଦେବା, ସାଷ୍ଟାଙ୍ଗ ପ୍ରଣିପାତ ହେବା ]
ବୃଦ୍ଧ—( ଗୋଲାପ ଫୁଲ ତୋଡାଟି ସାଥେ ସାଥେ କରବୀକୁ ଦେଇ )
ବଳବନ୍ତରା···
ବଳବନ୍ତରା—ଶ୍ରୀଛାମୁ···ମାହାରାଜ ।
ବୃଦ୍ଧ—ଆଜି ମୋର କରବୀର ଜନ୍ମଦନ, କଣ ଯୋଗାଡ଼ କରିଛ

ବଳବନ୍ତରାୟ—ସବୁ ଯୋଗାଡ଼ କରାଯାଇଛି । ଯାହା ରାଜ୍ୟରେ ବାଧି...
ବୁଢ଼ି—ତମେ ବସ । କିଛି ତାମସା, ସଙ୍ଗୀତ ବ୍ୟବସ୍ଥା କରିଛ ?
ବଳବନ୍ତରାୟ—ଆଜ୍ଞା, ସବୁ ହୋଇଛି ।
ବୁଢ଼ି—କରବୀ
କରବୀ—ଇଏର ମାଜେଷ୍ଟି
ବୁଢ଼ି—ବାହା, ବାହା, କରବୀତ ବହୁତ ଅଡ଼ଭାନ୍ସ କରି ଯାଇଛି ।
ବଳବନ୍ତରାୟ—ଆଜ୍ଞାନ୍
ବୁଢ଼ି—କରବୀ, ଏହୁ ଗୋଲାପ ଫୁଲଟକାଲଗା...
କରବୀ—(ହସିବା) ଆଗ ଠାକୁର ଘରକୁ ଫୁଲ ଦିଆଯାଉ ।
ବୁଢ଼ି—କାହିଁ, ଫୁଲ ଦିଅଁ ଦେବତାଙ୍କ ପାଖକୁ ଯାଇନି—
ବଳବନ୍ତରାୟ—ମୁଁ ଆଜ୍ଞା, ସବୁ ପଠାଇ ଦେଉଛି ।
ବୁଢ଼ି—ଶଳା ଗେରୁପଦାର ! ଡାକୁଅ ସବୁ କୁଆଡ଼େ ଗଲେ ।
ନିମକହାରାମ;
ବଳବନ୍ତରାୟ—ଆଜ୍ଞା, ସେମାନେ କଣ ଆଉ ମାନୁଛନ୍ତି ।
ବୁଢ଼ି—ଶଳାଙ୍କୁ ବାନ୍ଧିଆଣ ?
ବଳବନ୍ତରାୟ—ଆଜ୍ଞା, କଂଗରେସ, କଂଗରେସ ବୋଲିତ ରାଇଜ ଯାକ ହୁରି ପଡ଼ିଛି ।
ବୁଢ଼ି—ତମେ ଆଉ କଂଗ୍ରେସ ନାଁ, ମୋ ଆଗରେ ଧରିବ ନାହିଁ । ଦିଆନ, ଦାରୋଗା ଅଛନ୍ତି । ଅମଲ ଅଫିସର ଅଛନ୍ତି । ତମେ ଅଛ । ରାଜ୍ୟରେ ସୁଶାସନ ହେବ । ଯଦି ଆମେ କର୍ତ୍ତବ୍ୟ କରିବା ଲୋକେ କାହିଁକି କଂଗ୍ରେସରେ ମାତିବେ ? କଣ ବଳବନ୍ତରାୟ କହୁନ ?
ବଳବନ୍ତରାୟ—ଆ ଜ୍ଞା ।
ବୁଢ଼ି—ମୁଁ ଯାହା କହୁଛି, ସେଇଟା ଠିକ୍ କଥା କି ନା ତମେ ଭାବ । ଆମ ଦେଓ୍ୟାନ ଦାରୋଗା, ଅନ୍ୟ ଅଫିସର କଣ ହେଲେ ଶାସନ ଠିକ ହେବ ।

ବଳବନ୍ତରାୟ—ଶ୍ରୀ ଛାମୁ, ସେ କଥା କହନ୍ତୁ ନାହିଁ । ଦଆନ ଦାରୋଗାତ
ହାଲୁକା ହେଲେ···

ବୁଢ଼—କଣ କହୁଛ ବଳ-ବନ୍ତରାୟ ? ଦଆନ ଫଗୁ ମହାନ୍ତି । ସେ ଠିକ୍
ବାଟରେ ଥାଏ···

ବଳବନ୍ତରାୟ—ହଁ ଆଜ୍ଞା ଠିକ୍ ବାଟରେ ଥାଏ ।

ବୁଢ଼—ତମେ କଣ ଅନ୍ୟ କଥା କହି ଆସୁଥିଲ ?

ବଳବନ୍ତରାୟ—ଶ୍ରୀ ଛାମୁ, କିଛି ନୁହେଁ ମହାରାଜା ।

ବୁଢ଼—ବଳବନ୍ତରାୟ, ଆଜି ଏଇଲାଗେ ଦରବାର ବସିବ । ଦେଓ୍ୱାନ
ଆସିବେ...

ବଳବନ୍ତରାୟ—ଶ୍ରୀ ଛାମୁ ।

ବୁଢ଼—ତମେ ରହ ସବୁ କାଗଜ ପତ୍ର ଦେଖ
(ଏହି ସମୟରେ ବାହାର ଘଣ୍ଟାରେ ବାଜିଲା ଡିଂଡିଂ)

କରବୀ—ହଜୁର ମୁଁ ଯାଏ···

ବୁଢ଼—ବଳବନ୍ତରାୟ—ଝଙ୍କାକାମ ସବୁ ସରିଲାଣି ?

ବଳବନ୍ତରାୟ—ଶ୍ରୀଛାମୁ, ଛାମୁକରଣ ଥିଲେ, ମୁଁ ଦେଖି ଆସିଥିଲି ।

ବୁଢ଼—ଡକେଇଦିଅ ଛାମୁକରଣଙ୍କୁ । (ବଳବନ୍ତରାୟ ଯାଇ, ଛାମୁକରଣଙ୍କୁ
ଡାକି ଆଣିବା, ଛାମୁକରଣ ତଳେ ଲମ୍ବ ହୋଇ ଦଣ୍ଡବତ
କରିବା)

ବୁଢ଼—( ବାଘ ପରି ମୁହଁ କରି ) କଓ ଛାମୁକରଣ, ଦଆଁ ଦେବତା
ଦେଉଳ କାମରେ କାହିଁକି ତ୍ରୁଟି ?

ଛାମୁକରଣ—ହଜୁର, ମହାରାଜ ।

ବୁଢ଼—ହଜୁର, ହଜୁର, ନକଲ ଯା ଏଠୁ ଅଳପଶ୍ୱା, କରବୀର ଜନ୍ମଦନ ।

ଛାମୁକରଣ—ହଜୁର, ଉଆସ ସଟମତ, ସବୁଆଡ଼ ସବୁ ଜିନଷ,
ପାଲୁଣି, ଝଙ୍କା ପଠାଯାଇଛି ।

ବୁଢ଼—ଦେଖ ବଳବନ୍ତରାୟ, ଏ ଛାମୁ କରଣର ମୁହଁ ବଢ଼ିଗଲାଣି ।

ବଳବନ୍ତରାୟ—ଶ୍ରୀଛାମୁ ।

ବୁଢ଼—ତମେ ଯାଅ ଛାମୁ କରଣ···

ଶମ୍ଭୁକରଣ—(ଅଡ଼ ହୋଇ ଠିଆହେବା)

ବୃଦ୍ଧ—ତମେ ଯାଅ—

ଶମ୍ଭୁକରଣ—(ଧୀରେ ଧୀରେ ଅପସାରଣ)

(ନିଯୋଗ ଆସି ଖବର ଦେଲା ବଳବନ୍ତରାଙ୍କୁ ତୁନି କରି, ଦେଓ୍ୱାନ ସାହେବଙ୍କର ଆଗମନ ସମ୍ବାଦ)

ବଳବନ୍ତରା—ମହାରାଜ, ଦେଓ୍ୱାନ ଆସି ଗଲେଣି ।

ବୃଦ୍ଧ—ଡକାଅ ।

(ଦେଓ୍ୱାନଫଗୁ ମହାନ୍ତି ଆସିବା)

ଫଗୁ ମହାନ୍ତି—(ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ)

ବୃଦ୍ଧ—(ହୁକା ଟାଣିବା) ବଳବନ୍ତରା ?

ବଳବନ୍ତରା—ଶ୍ରୀ ଶମ୍ଭୁ ।

ବୃଦ୍ଧ—ମହଲରେ ଯାଇ ଶୀଘ୍ର ପିଲାପିଲିଙ୍କ ଦେଖି ଆସ ।

ବଳବନ୍ତରା—ହଜୁର (ବଳବନ୍ତରାର ପ୍ରସ୍ଥାନ)

ବୃଦ୍ଧ—କାଗଜ ପତ୍ର ସବୁ ଠିକ୍ ଅଛି । (ଦେଓ୍ୱାନ ପ୍ରତି)

ଦେଓ୍ୱାନ—ହଜୁର ।

ବୃଦ୍ଧ—ଆଉ ଖବର ।

ଦେଓ୍ୱାନ—ସବୁ ସୁରୁଖୁରୁରେ ଚାଲିଛି ।

ବୃଦ୍ଧ—ମୟୂର ଝାଲିଆ ବାଣିକାଲ ଧରି ଗୋଟାଏ ସଭା ହେଉଥିଲା । କଣ ସେ କଥା ।

ଦେଓ୍ୱାନ—ହଜୁର, ସେ ସବୁକୁ ମୁଁ ଭାଙ୍ଗି ଦେଇଛି ।

ବୃଦ୍ଧ—ଖାଲି ତାହା ନୁହେଁ, ଯଦି କର୍ତ୍ତବ୍ୟ ପଥରେ ଗୁଡ଼ାଏ ଗୋର ପାଜି-କଂଗ୍ରେସ, କଂଗ୍ରେସ ବୋଲି ରାଜ୍ୟରେ ଅଶାନ୍ତି ଆଣନ୍ତି, ତାହାହେଲେ:ଦାରୋଗାକୁ ଅର୍ଡ଼ର ଦିଅ, ରାଜ୍ୟ ଜାଳି ପୋଡ଼ି ଦେବାକୁ ।

ଦେଓ୍ୱାନ—ଶମ୍ଭୁ ସବୁ ଠିକ୍ ଅଛି ।

ବୃଦ୍ଧ ରାଜା—ପ୍ରଜାମଣ୍ଡଳରେ କିଏ କିଏ ଏଇଲେ ବାହାରିଛନ୍ତି ।

ଦେଓ୍ୱାନ—(ହସି ହସି) ସବୁ ଘର ବୁଡ଼ା, ଛତରା ହାଡ଼ି ପାଣପାକ—

ବୃଦ୍ଧ—ଦେଖ, ସାବଧାନ ଦେଓ୍ୱାନ, ନିଜ କର୍ତ୍ତବ୍ୟ କରିବା ପରେ
ପ୍ରଜାମାନେ ତଥାପି ଦଳେଙ୍କର କଥାରେ ମାତି ରାଜ୍ୟରେ
ମେଳି ଆରମ୍ଭ କରନ୍ତି, ତାହାହେଲେ ଦମନ ପ୍ରତିକାର ଲୋଡ଼ା ।

ଦେଓ୍ୱାନ—ପ୍ରଜାମାନେ ଅଯଥାରେ ମାତିବେ ଯିନା—

ବୃଦ୍ଧ—ନାହିଁ ନାହିଁ ମୋର ହୁକୁମ, ଏ ଶଳା ମେଳିଅଗୁଡ଼ାଙ୍କୁ ଜବତକର ।
ଯେଉଁଠି ଦେଖୁଛ, ହାତରେ ଗୋଡ଼ରେ ଲୁହାକଣ୍ଟା ପିଟିଦିଅ ।

ଦେଓ୍ୱାନ—ହଜୁର୍...ଅହୁରି କିଛି ଅଧିକା—

ବୃଦ୍ଧ—ଦାରୋଗା କାହିଁ ?

ଦେଓ୍ୱାନ—ସମସ୍ତେ ବାହାରେ ଅପେକ୍ଷା କରିଛନ୍ତି ।

ବୃଦ୍ଧ—ଆଦେଶ ଦିଅ, ଜଣ ଜଣକୁ ଆସିବାକୁ ।

ଦେଓ୍ୱାନ—(ନିୟୋଗକୁ ଆଖି ମାରିବା)

( ଦାରୋଗାଙ୍କ ପ୍ରବେଶ ପୋଲିସି କାଇଦାରେ ଅଭିବାଦନ
ଜଣାଇ । )

ବୃଦ୍ଧ—(ଚଡ଼ା କଣ୍ଠରେ) ଦାରୋଗା,

ଦାରୋଗା—ଛାମୁ, ମହାରାଜ ।

ବୃଦ୍ଧ—ନାଜର କାହିଁ, ପେସ୍କାର କାହିଁ, କାହାନ୍ତି ସବୁ ବୁଅଡ଼େ ଗଲେ ?
ରେଞ୍ଜର କାହିଁ ? ଦେଓ୍ୱାନ—ସମସ୍ତେ ଆସିଛନ୍ତି । ଘୋଡରା ପାହାଁରଠି—

ବୃଦ୍ଧ—ଘୋଡରା ପାହାଁରଠି କାହିଁକି ଅଛନ୍ତି ?

(ଜଣ ଜଣ କରି ନାଜର, ପେସ୍କାର, ରେଂଜର ଆସିବା)

ବୃଦ୍ଧ—କେଣି ସବୁ ରାଜ୍ୟ ଚଳିବ ନା, ଏ ସବୁ ଭିନ୍ନ ହୋଇଯିବ ?

ଦେଓ୍ୱାନ—ହଜୁର୍;

ବୃଦ୍ଧ—ସରବରାକାରଙ୍କୁ ସବୁ ତାଗିଦ କରୁଛି ।

ଦେଓ୍ୱାନ—ହଜୁର୍, କପିଳ ଖାନ...ସମେତ...

ବୃଦ୍ଧରାଜା—କାହିଁ କପିଳ...ସେଠାକୁ...

ଦେଓ୍ୱାନ—ହଜୁର ସେ ଆଜ କଚେରୀକୁ ଆସିଥିଲେ ।

ବୃଦ୍ଧ—ଏ ସବୁ ତାମସା ନୁହେଁ, ରାଜ୍ୟ ବୁଝାମଣା ବଡ଼ ବିଷମ କଥା । ଲୋକଙ୍କୁ ଦମନ କରିବା ପାଇଁ ରାଜ୍ୟ ଶାସନ ଗାଢ ହେବା ଦରକାର ।

ଦେଓ୍ୱାନ—ହଜୁର ।

ବୃଦ୍ଧ—ଦେଓ୍ୱାନ ତୁମେ ମୋତେ କହିବଟି ଏ ଭିତରେ କଣ କଣ ଘଟିଛି ।

ଦେଓ୍ୱାନ—ହଜୁର, ଖାଲି ମୋଗଲବନ୍ଦିଅଙ୍କ ଯୋଗୁଁ ଏ ପାଳି ଲାଗିଛି । ଝାଙ୍ଗୀ ଗୃନ୍ଦପୁର ଯୋଗୁଁ ମେଳିଆମାନେ ବେଶୀ ମେଳି ବାନ୍ଧୁଛନ୍ତି ।

ବୃଦ୍ଧ—ଗୃନ୍ଧପୁରିଆ ସବୁଠୁଁ ମେଳିଆ ।

ଦେଓ୍ୱାନ—ଅଜ୍ଞା, ମୁଁ ସେମାନଙ୍କ ପାଇଁ ସବୁ ବ୍ୟବସ୍ଥା କରି ଦେଉଛି । ସେହି ଗାଁରେ କଡ଼ା ପୁଲିସ ପହରା ଦେଉଛି । ଦରକାର ପଡ଼ିଲେ ସେଠି ଗୋଟାଏ ସାମୟିକ ଜେଲଖାନା...

ବୃଦ୍ଧ—ଖୋଲି ଦିଅ । ଚଞ୍ଚଳ ଖୋଲ । ମାଳଅଞ୍ଚଳରେ ଯେମିତି କଂଗ୍ରେସିଆ ପଶି ନ ପାରନ୍ତି । କଡ଼ା ବ୍ୟବସ୍ଥା କର । ଅଚ୍ଛା ଦେଓ୍ୱାନ, ମୋତେ କହିବଟି କେଉଁମାନେ ଏଥିରେ ମୁଖିଆ ହେଉଛନ୍ତି ।

ଦେଓ୍ୱାନ—ଧନମାଳୀ ରାମ, ସିଂଧୁ ମିଶ୍ରେ, ପଦନ ଦାସ, ଅନନ୍ତ ବରାଡ଼ ଏହିମାନେ ସବୁ ଗଣ୍ଡଗୋଳର ମୂଳ କାରଣ ।

ବୃଦ୍ଧ—ଖାଲି ଜାଣିଲେ ହେବନାହିଁ । ଜନଟାକୁ କ୍ଷେତ୍ରରେ ପ୍ରୟୋଗ କରିବାକୁ ହେବ ।

ଦେଓ୍ୱାନ—କିଛି ନାହିଁ ହଜୁର, ଗୁଟି କାଟି, ଜଙ୍ଘିଆ ପିନ୍ଧାଇ, ମାଳିଁଘରେ କିଛି ଦିନ ଘଣା ପେଲାଇ ଦେଲେ ପୁଣି ଠିକ୍ ହୋଇଯିବେ ।

ବୃଦ୍ଧରାଜା—ନମକହରାମଗୁଡ଼ାଙ୍କୁ ଜଙ୍ଘିଆଁ ପିନ୍ଧାଅ । ମୁହଁ ବାନ୍ଧିଦିଅ ।

ଦେଓ୍ୱାନ—ହଜୁର, ଭେଦିଆମାନଙ୍କୁ ଧରିଆଣି ନଜରବନ୍ଦୀରେ ରଖିଦେଲେ......

ବୃଦ୍ଧ—'ନଜର ବନ୍ଦୀ' ନଜର ବନ୍ଦୀ । ଯେଉଁଠି ଯିଏ ଅଛନ୍ତି । ସମସ୍ତଙ୍କୁ
  ସେହି ପଥର ପାଚେରୀ ଭିତରେ ପୂରାଅ ।

ଦେଓ୍ୱାନ—ଶ୍ରୀଘ୍ର, ସବୁ ଠିକ୍ ହୋଇଯିବ ।

ବୃଦ୍ଧ—ଖଜଣା ସବୁ ଏସାଲେ ଅଦାୟ ହୋଇଛି ତ ?

ଦେଓ୍ୱାନ—ହଜୁର୍......

ବୃଦ୍ଧ—ବଳବନ୍ତରାୟ ଘରକୁ କେତେ ହଜାର ଗଲା ?

ଦେଓ୍ୱାନ—ହଜୁର୍, ପନ୍ଦର ହଜାର ।

ବୃଦ୍ଧ—ବଳବନ୍ତରାୟ (ବଡ଼ପାଟିରେ)

ବଳବନ୍ତରାୟ—(ଚମ୍ପା ଫୁଲ ମାଳ ସହ) ଶ୍ରୀ ଛାମୁ ।

ବୃଦ୍ଧ—ଗନ୍ତାଘର ଖୋଲି ଦେଖ ବାକୀ ଯାହା ଟଙ୍କା ଅଛି । ସବୁ
  ଉଆସକୁ ପଠାଇ ଦିଅ ।

ବଳବନ୍ତରାୟ—ହଜୁର୍,

ବୃଦ୍ଧ—ଦେଖ, କରବୀର ଅତି ଜନ୍ମଦିନ ।

ବଳବନ୍ତରାୟ—ଯେ ହଜୁର୍......

( ଏହି ସମୟରେ ନିକଟସ୍ଥ ଜଗନ୍ନାଥଙ୍କ ମନ୍ଦିରରେ ପୂଜା
  ଘଣ୍ଟା ବାଜିଲା)

ବଳବନ୍ତରାୟ—ହଜୁର୍ ଫୁଲ ଆସିଛି ।

ବୃଦ୍ଧ—କିଏ ଆଣିଛି ।

ବଳବନ୍ତରାୟ—ପୁରୋହିତେ ନିଜେ ଆଣିଛନ୍ତି ।

ବୃଦ୍ଧ ରାଜା—ଅପେକ୍ଷା କରନ୍ତୁ ।

ଦେଓ୍ୱାନ—ହଜୁର୍, ଆପଣ ହୁକୁମ ଜାରୀ କରନ୍ତୁ । ସବୁ ଅଶାନ୍ତି
  ଭିଆଡ଼େ ଦୂର ହୋଇଯିବ ।

ବୃଦ୍ଧ—କିଓ ରେଞ୍ଜର କଣ କହୁଛ ? ଦେଓ୍ୱାନ ସାହେବଙ୍କ ହୁକୁମ
  ଅନୁଯାୟୀ ସବୁ କାଗଜପତ୍ର ଠିକ୍ କର୍...

ରେଞ୍ଜର—ହଜୁର୍, ଶ୍ରୀଛାମୁ ମୋର ଗୋଟିଏ କଥା ଅଛି ।

ବୃଦ୍ଧ—କଣ ?

ରେଞ୍ଜର—ଶୀଘ୍ରମୁ, ଦ' ଗୃହିଠାଙ୍କୁ ଛଲ୍ଲ ପାରି ହେଉ ।

ବୃଦ୍ଧ—ମୁଁ ତ କହୁଥିଲି ସେ ଧନମାଳୀ ରାମ, ନଧି ସେନାପତି, ପଦନ ଦାସ କେତେଠାଙ୍କୁ ଛଲ୍ଲ ପାରି କରାଅ ।

ଦେଓ୍ୱାନ—ଛଲ୍ଲ ପାରି ହୋଇ ଠାଙ୍ଗିରେ ରହୁଛନ୍ତି । ଗୃନ୍ଦପୁରରୁ ଠାଙ୍ଗି କେତେ ବାଠ—

ବୃଦ୍ଧ—ଏହୁ ଗଡ଼ ମୁକାମରେ ତେବେ ନଜର ବନ୍ଦୀରେ ରଖ—

ଦେଓ୍ୱାନ—ହାତରେ ଗୋଡ଼ରେ ଲୁହା ଜଞ୍ଜିର...

ରାଜା—ହଁ, ସେ ସିନ୍ଧୁ ମିଶ୍ରକୁ ଅଗ ଦାଗୀ ଶ୍ରେଣୀରେ ରଖ—

ଦାରୋଗା—ହଜୁର୍ ଗୃହିଦନ ତଳେ ଧରା ପଡ଼ିଥିଲା, ବନ୍ଧୁକ ଡହରେ ଦାନ୍ତ ଭାଙ୍ଗି ଯାଇଛି ।

ରାଜା—କିଏ ଅଛରେ, ବଳବନ୍ତରା···

ବଳବନ୍ତରା—ମାହାଜ୍ଞା···

ରାଜା—କରଣୀକୁ ଡାକ—

(ଟିକିଏ ପରେ କରଣୀର ପ୍ରବେଶ)

କରଣୀ—ଅଜ୍ଞା···କାହିଁକି ଡାକିଲେ ?

ବୃଦ୍ଧ—କଣ କାଗଜପତ୍ର ଅଛି···ଦେଓ୍ୱାନଙ୍କୁ ଦଅ । ସବୁ ଫାଇଲ ଦେଖି ଯାଆନ୍ତୁ । (ବଳବନ୍ତରା ଫାଇଲ ଅଣିବା, କରଣୀ ଗୋଟି ଗୋଟି ଫାଇଲ ଦେଓ୍ୱାନଙ୍କୁ ଦେଖାଇ ଦସ୍ତଖତ ପରେ ରଖାଇବା)

ରାଜା—ତମମାନଙ୍କୁ ସମସ୍ତଙ୍କୁ ରାଜାଙ୍କର ଅଦେଶ, ରଣପୁରରେ ଯେପରି ଟିକିଏ ସ୍ୱର ଶବ୍ଦ ଶୁଣା ନ ଯାଏ ।

ଦେଓ୍ୱାନ—ହଜୁର୍,

ଦାରୋଗା—ହଜୁରଙ୍କ ଶାସନରେ କଣ ସମ୍ଭବ ।

ରାଜା—କରଣୀ ।

କରଣୀ—ଇଓର ମାଜେଷ୍ଟି (ଉପସ୍ଥିତ ହେବା)

ରାଜା—ତମର ଅଜି ଅଉ କଣ ପ୍ରୋଗ୍ରାମ

କରଣୀ—ଅଜି ପାରିଧିକୁ ବଜେ ହେବାର ଥିଲା ।

ରାଜା—(ଘଣ୍ଟାକୁ ଗୃହିଁ) ନାହିଁ,

ବଳବନ୍ତସିଂ—ହଜୁର ଗୋଟାଏ ଗୁହାରି କରିବାର ଅଛି...

ରାଜା—ପୁଣି ଆଉ କଣ ?

ବଳବନ୍ତସିଂ—ହଜୁର୍-କପିଳ ପାତ୍ର ଅଖଡ଼ା ଦଳ ଆସିଛନ୍ତି ।

ରାଜା—ତେବେ ଆମ ଜରବାର ଜଲ୍ଦି ଦରବାରେ ଅଳ୍ପ ସଙ୍ଗୀତ ଟିକିଏ
ହେଉ । କଣ କହୁଛନ୍ତି ଦେଉୟାନ ?

ଦେଉୟାନ—ମୋର ହଜୁର ସେତକ ଗୁହାରି କରିବାର କଥା ।

( ବଳବନ୍ତସିଂ ତରତରରେ ଯାଇ ଅଖଡ଼ାଦଳଙ୍କୁ ଭିତରକୁ
ଆଣିବା, ଦୁଇଟି ସଙ୍ଗୀତ ପିଲା, ଗୋଟିଏ ହାରମୋନିୟମଧାରୀ,
ଜଣେ ମର୍ଦ୍ଦଳଧାରୀ, ସଙ୍ଗୀତ ପିଲା ଦୁଇଟି ସିଧା ରାଜାଙ୍କୁ
ମୁଣ୍ଡିଆ ମାରି ସାରି ତତ୍‌ପରେ ଦେଉୟାନଙ୍କୁ ମୁଣ୍ଡିଆ ମାରି
ତତ୍‌ପରେ ଠିଆ ହେବା, ଅଖଡ଼ା ଆରମ୍ଭ ହେଲା)

[କିରଣୀ ରାଜାଙ୍କୁ ଗ୍ଲାସରେ... ମଝିରେ ମଝିରେ ପିଇବାକୁ
ଦେବା ।

ରାଜା—ଏ ବଳବନ୍ତସିଂ—

ବଳବନ୍ତସିଂ—ମହାର୍ଜା—

ରାଜା—ଏମାନଙ୍କୁ ଗୃହ ହଲ ଯଥା ଦଶଟଙ୍କା—ରାଜାକରଣଙ୍କୁ ଅର୍ଡର
ଦିଅ....

(ବଳବନ୍ତସିଂ ଧାଇଁ ବା)

[ସଙ୍ଗୀତ ପୁଣି ଆରମ୍ଭ ହେଲା । ତାହାରି ମଧ୍ୟରେ ସିନ୍
ପଡ଼ିଲା ]

---

## ୩ୟ ଅଙ୍କ

### —ପ୍ରଥମ ଦୃଶ୍ୟ—

(ଗାଁ ଦାଣ୍ଡ । କପିଳ ପାଣ୍ଡ ବେକରେ ଫୁଲମାଳ, କୋଠ ଉପରେ ଗଞ୍ଜି ପିନ୍ଧି, ବଙ୍କୁଲ ବାଡ଼ି ଧରି ଚଷମା ପିନ୍ଧି ଘରୁ ବାହାରି ପଡ଼ୁଛନ୍ତି···ପଛରୁ ସ୍ତ୍ରୀ ଲବଙ୍ଗଲତା କହୁଛନ୍ତି···)

ଲବଙ୍ଗଲତା—ହଇକିଏ, ତମକୁ ଯେତେ କହୁଛି, ଶୁଣିଲ ନାହିଁ । ଇମିତି କାହିଁକି ହେଉଛ ? ରାଜାଙ୍କଣ ତମ ମୁଣ୍ଡରେ ସୁନାପାଗ ବାନ୍ଧି ଦେବେ ?

କପିଳ ପାଣ୍ଡ—ରାଜା ଘରକୁ କେଉଁଠି ଯିବପରି ?

ଲବଙ୍ଗଲତା—ତମେ ଆଉ ସେ ଶୁଆଙ୍ଗ କଥା କୁହ ନାହିଁ ।

କପିଳ ପାଣ୍ଡ—ଅଲୋ, କଥାରେ କହନ୍ତି ପରା, ଛାଡ଼ ପିତୃକାର୍ଯ୍ୟ, କର ରାଜକାର୍ଯ୍ୟ ।

ଲବଙ୍ଗଲତା—ଓହୋ, ଯୁବରାଜା ତ, ରାଇଜ ବୁଝାମଣେ ତ ଗଲ ପଡ଼ୁଛି । ତମେ କାହିଁକି ଗାଁରୁ ବାହାର ହୋଇ ଏପରି ଆଚରଣ କରୁଛ ?

କପିଳ ପାଣ୍ଡ—ହଇଲେ ସୁନାବୋଉ—ତୁ କଣ କହୁଛୁ, ରାଜା ଆମର ସବୁଁ ଧର୍ମ କର୍ମ—

ଲବଙ୍ଗଲତା—ତମ ରାଜା, ଅହା, ମୁଁ ଜାଣିଛି

କପିଳ ପାଣ୍ଡ—ଅଲୋ ତୁ ସେମିତି ଆଉ କହନା, ଏଟା ଦାଣ୍ଡ ମଝି, କିଏ ଯଦି ଶୁଣିବ···

ଲବଙ୍ଗଲତା—କାହିଁକି ଆମର ଗରଜ ପଡ଼ିଛି । ଚଉଦକୋଣ ମୂଲକ, ଯେଆଡ଼େ ଗଲେ, ସେ ଅଡ଼େ ମଧ୍ୟ···

କପିଳ ପାଣ୍ଡ—ଅରେ ହବାରେ ନାହିଁ, ଆଉ ହବାରେ ନାହିଁ,

ଲବଙ୍ଗଲତା—ତମେ ଘରକୁ ଆସ, ରାଜା ଘରକୁ ତମେ ଯିବା ଦର୍କାର ନାହିଁ ।

କପିଳ ପାଣ୍ଡ—କଣ କହିଲୁ, ଗୁଣମଣିଲୋ ।

ଲବଙ୍ଗଲତା—କାଲି ଦେଖିବ ଗାଁ ଲୋକେ ବାଡ଼େଇବେ

କପିଳ—କଣ କହିଲୁ, କପିଲପାଣ୍ଡ ଥାଉ ଥାଉ···ଦେଖ, ଏହି ଗାଁରେ ଏମିତି ପୁଅ ନାହିଁ, ନରେନ୍ଦ୍ର ମହାପାତ୍ରକୃତ କପିଲପାଣ୍ଡ ତରକ···

ଲବଙ୍ଗ—ଗାଁ ଲୋକେ କହୁଛନ୍ତି ତମେ କ୍ଷେତ୍ରବାସୀ ବସନ୍ତଙ୍କ ନାମ ସରକାରକୁ ଲେଖି ଏତେ କଥା କଲ ।

କପିଳ—ଅଲୋ ଖାଲି ବସନ୍ତ କଥା କଣ କହୁଛୁ, ତୁ ଯେବେ ସେମିତି ଧାଡ଼ରେ ପଡ଼ିବୁନି, ତେବେ ତୋ କଥାରେ ରସଟିକ ନଦେଇ ଦେବ ।

ଲବଙ୍ଗ—ବୁଢ଼ାଦିନେ ଏ ରୋଗ କାହିଁକିମ ?

କପିଳ—ହଇଲୋ, କଣ କରି ପାଇଲୁ କହ୍ଲୋ, କପିଳ ପାଣ୍ଡ ପରା ନରେନ୍ଦ୍ର ମହାପାତ୍ରଙ୍କ ୨୫ ବାଟି ଜମି ଭୋଗ କରୁଛି । ଏ ରକ୍ତରେ ରଣପୁର ରାଜଅନ୍ନଗ୍ରହ ଲେଖା ହୋଇଛି ।

ଲବଙ୍ଗ—ଅଉ ବେଶୀ କହନି···ମୁଁ କହି ରଖିଲି, ତମେ ସେ ଭେଟି, ବେଠିରେ କିଛି କାହାକୁ କହନି—କଥାରେ ଅଛି ପ୍ରଜାମେଳକୁ ରାଜାମେଳ ପାରେନି—

କପିଳ—କପିଲ ପାଣ୍ଡ ସବୁ ମେଳ ଭାଙ୍ଗି ଦେବ ।

ଲବଙ୍ଗ—କାହିଁକି ତମର ଏ ଗୋଠଖଣ୍ଡିଆ ନୀତି, ଗାଁରୁ ଅମେ କଣ ବାହାର । ବସନ୍ତ ଘର ବୁଢ଼ା ଜେଲ ଗଲା, ପୁଅ ଝିଅ କଂଗରେସରେ ମିଶିଲେ...

କପିଲ ପାଣ୍ଡ—ଅଲୋ ଏ ସୁନାବୋଉ, ତୁ କଣ ସେମିତି ହେବୁକିଲୋ, ···ମୁଁ ଅଛିଟି

ଲବଙ୍ଗ—ଉଠୁ, ଉଠୁ, ଗାଁ ଲୋକଙ୍କ ବେକରେ ଫାଶ ଦେଇ ତମେ ଏମିତି ଦଆନ ଦାରୁଗାଙ୍କ ପ୍ରିୟପାତ୍ର ହେଉଛ ନା...

କପିଳ—କହିଲୁ ସୁନାବୋଉ, ତୁ କଣ ଜାଣୁ ? ହଇଲୋ ଦଆନଙ୍କ ପାଖରେ ବସେ କିଏ ? ବସେ କପିଲ ପାଣ୍ଡ...

ଲବଙ୍ଗଲତା—ବସନ୍ତ ବୁଢ଼ାକୁ ଜେଲ ଦେଲ, କଣ କରି ଘଟେଇଲ ! ତା ପୁଅ ଝିଅତ···

କପିଳ ପାତ୍ର—ଅଚଳ ମୁଁ ଜାଣେ, କମଳା ଆଜ କଂଗ୍ରେସରେ ମାତିଛି...

ଲବଙ୍ଗ—ଝିଅଟାଏ ହୋଇ ତାର ଏତେବଡ଼ ସାହସ ହେଲା, ତମରତ କିଛି...

କପିଳ—ମୁଁ ଯାଉଛି, ସୁନାବୋଉ,...ଘର ଭିତରୁ ବଟୁଆଟା ଆଣିଲୁ—ତୁ ଆଉ ରାଜାଙ୍କ କଥା କହନା, କେଡେ ବଡ଼ ରାଜାସେ, ସ୍ୱୟଂ ଚଳନ୍ତି ବିଷ୍ଣୁ...

ଲବଙ୍ଗ—(ଘର ଭିତରୁ ବଟୁଆଟା ଆଣି ଦେବା) ଘରରୁ ପୁଅ ଝିଅ ସଖ୍ୟ ତମର ହଟ ଚମଟ କଥା ଜାଣିଲେଣି, ଗାଁକୁ ତ ଯାହା ବଦନିଇବ। ଆଯେ ଶେଷକୁ ମେଳିଅଙ୍କ ହାତରେ ବନ୍ଧା ହୋଇ ପ୍ରାଣ ଯିବ।

କପିଳ—କଣ କହିଲୁ...ମେଳିଅଙ୍କ ହାତରେ। ହଇଲେ ସ୍ୱରାଜ ନେବେ...ହଇଲେ, କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କୁ ତୁ କଣ ବୋଲି ଜାଣିଲୁକି ? ସେ ଗୃହିଁଲେ ପୃଥ୍ୱୀ ଟଳି ପଡ଼ିବ। (ଖଚେଇ ହୋଇ) ସ୍ୱରାଜ ପାଇବେ, ହଇଲେ ଷୋଡ଼ଶ ବରଷର ଝିଅ, ଅଗ୍ନିଚଣ୍ଡୀ କମଳା ସ୍ୱରାଜ କରିବ...କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କଠାରୁ ବଳି କିଏ ସ୍ୱରାଜ ଅଛି...

ଲବଙ୍ଗ—ଅହେ, ଗାଁ ଗଣ୍ଡା ମୁଲକ ସ୍ୱାଧୀନ ହେବ, ସମସ୍ତେ ସ୍ୱାଧୀନ ହେବେ।

କପିଳ—(ଖଚେଇ ହୋଇ) ଦେଖି ଦେଖି କେମିତି କମଳା ଦେବୀ, ଧନମାଳୀ ରାମ, ରଘୁ ମହାନ୍ତି ମୁଲକ ସ୍ୱାଧୀନ କରିବେ। ରଘୁ ମହାନ୍ତି ପରି ଦଶଜନ ଥାଉ ଥାଉ କାହା ଜଭରର ଭଲ ହାଡ଼ ଅଛି...

ଲବଙ୍ଗ—ତମେ କାହା ନାଁରେ ଖରଚିଛ ବୁଝିବ,

କପିଳ—କଣ କହିଲୁ—ଖରଚିଛି, କଟକ, ମୋ, ଏ 'ନୋଟ ବହି'ରେ ପରା ସବୁ ଟିକ୍ ଠାକ୍—

ଲବଙ୍ଗ—ତମେ ଯାଅନ—

କପିଳ—କଲେ, କାହାକୁ ଡର କର

ଲବଙ୍ଗ—ସେହି ରଘୁ ମହାନ୍ତି, ଧନମାଳୀ ସାମ, ଅନନ୍ତ ବରାଡ଼ ସବୁ ଲୋକଙ୍କୁ ହାତ କରିଛନ୍ତି ।

କପିଳ—ସେଥିକତ ସେହି ଦୁଇ ଗୃହଟା ଖଣ୍ଡିଆ, ହଉ...କାହାର ଘରେ ଦାନା ନାହିଁ,କାହାର କନା ନାହିଁ, କାହାର କୁଳ ନାହିଁକି ଜାତି ନାହିଁ...

ଲବଙ୍ଗ—ନାହିଁରେ ସୁନାବାପା, ତମେ କେଉଁଥିରେ କିଛି ବୁଝ ନାହିଁ... ସିନ୍ଧୁ ମିଶ୍ରେ ଗାଁକୁ ଆସିଲେ, ତାଙ୍କ ଆଗରେ ଲୋକେ ତୁମକୁ ଧକକା କରି ଦେବେ ।

କପିଳ—କପିଳ ପାତ୍ର ଜରେନ—

ଲବଙ୍ଗ—ମେଳ ହୋଇ ତମକୁ ବାଡ଼େଇବେ—

କପିଳ—ତୁ ଜାଣି ରଖିଥା, କପିଳ ପାତ୍ରକୁ ଦଅନ ଦାରେଗା ଗୁହିଁଛନ୍ତି,

ଲବଙ୍ଗ—ତମେ ଯାଅନ, କି ଲୋକଙ୍କୁ କିଛି କୁହନ—

କପିଳ—ତୁ ସୁନା ବୋଉ, ଘରକୁ ଗଲୁ । ମୁଁ ପରା...ହୁକୁମ ଡାକେରା ଅସିଛୁ, କପଟ ମିବନ । ସେ ଅଜ କେହି ନୁହେଁ, କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ର...

ଲବଙ୍ଗ—ଥୋକସ ହେଲେ...ଲୋକେ (ଘର ଭିତରକୁ ମିବା)

କପିଳ ପାତ୍ର—ସୁନାବୋଉ ମନେ ରଖିଥା, ସେ କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ର...

(ଲବଙ୍ଗଲତା ଦୁଆର ବନ୍ଦ କରି ଘର ଭିତରେ ପ୍ରବେଶ କଲେ)

(କପିଳ ପାତ୍ର ବିପରୀତ ଦଗକୁ ଗୁହିଁ ହଇରେ ବାମା, ଦାମା, ବୋଲି ବଡ ପାଟିରେ ଡାକ ଛାଡ଼ିଲେ,) ମନେ ରଖ ଅଜି ରସଟିକ ନଗେଇ ଦେଉଛି । ସେ କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଟି... (ଟିକିଏ ପୁଣି ଘର ଭିତରକୁ ପଶିବା)

( ଘରର ବିପରୀତ ଦଗରୁ ଲୋଟା ବାମ, ସନ୍ଧ୍ୟାଦେବ, ଖାଲୁ ପ୍ରବେଶ କଲେ । ପ୍ରାୟ ଗୃର ଛ' ଜଣ, କାହା କାହା ହାତରେ କଖାରୁ ଠାଏ, କାହା ହାତରେ କଦଳୀ କାନ୍ଦିଏ, କାହା ହାତରେ ଜଉଆଁଠାଏ, ଦୁଧ

ଦକ୍ଷ ଭାବରେ, ସମସ୍ତଙ୍କ ହାତରେ କିଛି ନା କିଛି ଅଛି, ଛୋଟା ବାମ ଛୋଟେଇ ଛୋଟେଇ ଚାଲୁଛି, ଅଜ ଭେଟି ନେଇ ଚାଲିଛନ୍ତି ରାଜା ଦୁଆରକୁ )।

ମାଳ—ଅରେ ବାମା ଭାଇ ଗୀତଟେ ବୋଲ...

ଛୋଟା ବାମ—ଭେଟି ଗୀତ...

ମାଳ—ହଁ, ହଁ,

ସହଦେବ—ଗୀତଟା ବୋଲ...

ଛୋଟା ବାମ—ଓହୋ, ଏତେ ବାଟ, କେତେବେଳେ ଯିବା,

ମାଳ—ଅରେ ସତରେ କଣ ରାଜା ଘରକୁ ଭେଟି ନେଇ ଯିବା।

ଛୋଟା ବାମ—ମୁଁ ତ କହୁଛି, ତୁ ଆସନା, ଅମର ରାଜଭକ୍ତ ଅଛୁ, ଅମେ ଯିବୁ।

ମାଳ—ବାମ ଭାଇ, ବଡ଼ ରାଜଭକ୍ତ—

ସହଦେବ—ହେଉ ବାମ, ଗୋଟେ ଗୀତ ହେଉ...

ମାଳ—ଅରେ ମୁଁ ବୋଲୁଛି ଶୁଣ, ଛୋଟା କଣ ବୋଲିବ...

କର୍ପୁର ଗନ୍ଧଣି କନା ପଡ଼ିଅଛି,
ପିଠି ଫାଟି ଭେଟି ହେଲାଣି ସାର,
ରାଜା ରାଜୁତିରେ କହିଲେ ନ ସରେ
ଆମ ଦୁଃଖ ମନ୍ତ୍ରୀମନ୍ତ୍ରିଅଙ୍କର—
ପୁରୁବ ଅମଳ ସୁନ୍ଦଆଁ ସଗର
ଅଜ ଅଉ ନାହିଁ ଦେଶେ ଆମର,
ଭଲ କଥା କାଏ ଶୁଣୁଛି ଭାଇରେ
ଦଆନ ଦାରୋଗା ଚୋର ଅମଲ...
ବୋଇତ ବାହୁଡ଼ା ବେପାର ଉଜୁଡ଼ା
ସୁନା ଧାନ ସୁନା ଶୀର ଦେଶର
ଗରବ ଘୁଞ୍ଚାଏ ଭେଟି ଅଣିଛନ୍ତି
ପିଠି ଫଟା ହେବ ବେଠିଅଙ୍କର...

( ଗୀତ ବୋଲିବା ବେଳେ ଅନ୍ୟ ଛଅ ଗୃହଜଣ ପାଳି ଧରୁଥିଲେ । ଠିକ୍ ଗୀତ ଶେଷରେ କପିଳପାଣ୍ଡ ଘରୁ ବାହାରିଲେ )

କପିଳପାତ୍ର—କରେ ତମେ ସବୁ କଣ ଆସ୍ରମରେ ଅସୁଛ । ଜଣେ ଫଗୁ-ମହାନ୍ତି, ଆଉ ଜଣେ କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଟି । ଆସ ଚଅଁଳ ଆସ । ରାଜା ଘରଦୁଆର ହାକିମଭ୍ ବୁଝିବ । ହଇରେ ମାତ୍ତ୍ର, ତୁ କୁଆଡେ଼ ବାହାରିଛୁ ।

ମାଳ—ସରକାରଙ୍କାଠେ ତମେ ଯୁଅଡେ, ଏ ଗାଁର ମାନ୍ତ୍ର ସେହି ଆଡେ଼...

କପିଳ—ଚୁପ୍, ତୋରତ ନା ତାଳିକାରେ ଉଠିଛି ।

ମାଳ—ସରକାରଙ୍କାରେ କ ତାଲିକା—

କପିଳ—କରେ ଠୋକା ଥଟ୍ଟା କରୁଛୁ କରେ ।

ମାଳ—ରସଟିକ ନାଗିମିବଟି । କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ କଥା—ସେତ ଆମପରି ଜଣେ ନୁହନ୍ତି ଆମରି ରାଜା...

କପିଳ—(ବାଙ୍କୁଲି ବାଡି ଉଠାଇ) କଣ କହିଲୁ । ହଇରେ ମର୍ତ୍ତ୍ୟରେ ଚଳନ୍ତି ବିଷ୍ଣୁ କିଏ ? ନମକ ହାରାମ, ତାଙ୍କରି ଅନ୍ନ ପାଣିରେ ବଞ୍ଚି—

ମାଳ—ଅହେ ସରକାରଙ୍କାରେ, ଆମେ ଏହି ମଣିନାଗ ଦେବୀଙ୍କ ରଣପୁର ମାଟିରେ ତାରି ଅନ୍ନ ପାଣିରେ ବଢ଼ିଛୁ । ତମେ ସରକାରଙ୍କାରେ କହିବ, କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ଅନ୍ନପାଣି···

କପିଳ—ହଁ, ଅଲବତ କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ଅନ୍ନପାଣି ।

ମାଳ—ହେଉ ସରକାରଙ୍କାରେ, ଏବେ ଗଡକୁ ମିବାଟି

କପିଳ—ହଁ ଗଡ଼କୁ ମିବା, ତୋ ଭେଟି କାହିଁ ।

ମାଳ—[ଗୋଟିଏ ବଡ଼ ଭେଟି ଦେଖାଇବା, (କଖାରୁ)] ଆମର କଣ ଅଛି ଆମେ ତ ଭେଟି ଦେବୁ ।

କପିଳ—ଅରେ ମାନ୍ତ୍ର, ମୁଁ ବାପା କହୁଛି, ଆମ ରାଜା ହାକିମ ହୁକୁମା, ତାଙ୍କୁ ମାନି ଚଳିଲେ ସିନା ସବୁ ସୁଖ, ତୁ ବାପା ଗୃଲ, ତୋ ପୂର୍ବପୁରୁଷ ବାପା ଅଜା ଭେଟି ଦେଉଥିଲେ, ରାଜାଘର ସିଦ୍ଧି ତୁ ଜାଣିନୁ । ଏବେ ଗୃଲ, ଆଜି ତୋତେ ମୁଁ ଦଅନ ଫଗୁ

ମହାପାତ୍ରଙ୍କୁ କହି ଅସଲ କାମଟାଏ କରାଇ ନେବ...ତୁ ମାଳୁ କହୁ
କହିବୁ ନାହିଁ । ଛାମୁ ବଡ଼ଙ୍କ ହେଲେ ବେଳେ ଲମ୍ବ ହୋଇ
ପଡ଼ିଯିବୁ । ମନେ ରଖିଥା ଲମ୍ବ ହୋଇ ପଡ଼ିଯିବୁ ।

ମାଳୁ—ଛାମୁଙ୍କର ଯଦି ବଡ଼ଙ୍କ ନ ହୁଅନ୍ତି ?

କପିଳ—ଆଟର ତୁ ଖୁଡ଼ୁ ବୁଆଟର ଲମ୍ବହୋଇ ପଡ଼ିଯିବୁ ।

ମାଳୁ—ଲମ୍ବ ହୋଇ ପଡ଼ିଯିବ ।

କପିଳ—ହଁ, ଲମ୍ବ ହୋଇ ପଡ଼ିଯିବୁ ।

(ବିପରୀତ ଦିଗରୁ ରଘୁ, ସିନ୍ଧୁ ମିଶ୍ରଙ୍କର ପ୍ରବେଶ, କପିଳପାତ୍ର ହଠାତ
ଛନିଆ ହୋଇ ଯିବା । ସମସ୍ତେ ସେମାନଙ୍କୁ ଦଣ୍ଡବତ କରିବା । ମାଳୁ
ଏକବାରେ ରଘୁ ଓ ସିନ୍ଧୁଙ୍କ ପାଦ ଧରି ପକାଇବା···)

ରଘୁ—କଣ "ଗୋଡ଼ ତଳେ ଲମ୍ବ ହୋଇ ପଡ଼ିଯିବା ।"

(କପିଳ ପାତ୍ର କେବଳ ଆଖି ତରାଟି ଚାହିଁବା)

ମାଳ—ନାହିଁ ଆଜ୍ଞା···(ନୀରବ)

କପିଳ—ହଁ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଯିବା ।

ସିନ୍ଧୁ—ଆପଣ ପାତ୍ରେ, କଏ କାହା ଗୋଡ଼ତଳେ ଲମ୍ବ ହୋଇ ପଡ଼ିଯିବ
ଯେ···

ରଘୁ—ପାତ୍ରେ ପଡ଼ିଯିବେ ଲମ୍ବ ହୋଇ ପ୍ରଜାମଣ୍ଡଳର ଗୋଡ଼ ତଳେ—

କପିଳ—(ରାଗିଯାଇ) କରେ ମହାପାତ୍ର ଟୋକା ତୋର ବଡ଼ ବହପ...

ସିନ୍ଧୁ—ସମ୍ଭାଳ କର, ସମ୍ଭାଳକର ପାତ୍ରେ ।

କପିଳ—ଆପଣେ, ଦେଖନ୍ତେ, ମୋ ପୁଅର ମାମୁଁ ଶଳାକୁ

ସିନ୍ଧୁ—ଥୟ ଧର, ଥୟ ଧର,

କପିଳ—ଏ ଟୋକାର ବହପ ଦେଖ ତେ,

ସିନ୍ଧୁ—ନାହିଁ ପାତ୍ରେ, ସେଟା ପିଲାଟାଏ,

କପିଳ—ପିଲାଟାଏ, ଗଞ୍ଜେଇ ଖାଇଛି କରେ···

ମାଳୁ—ସରବରାକାରେ, ଆଉ ଦୋଷ ହୁଅନ, ସେତ କୃଷ୍ଣଚନ୍ଦ୍ର ନରେନ୍ଦ୍ର
ମହାପାତ୍ରଙ୍କ ପ୍ରଜା ।

କପିଳ—ହାତେ, ଚୁପ କର···

ମାଲୁ—ଗୁଲ ମିବା ସରବସକାରେ ।
ସିନ୍ଧୁ—ହଉ, ପାତ୍ରେ କୁଆଡେ ଯାଉଛ ।
ରଘୁ—ପାତ୍ରେ ସ୍ୱର୍ଗ ଗଲେଣି ।
କପିଳପାତ୍ର—ତମେ ସବୁ ଗାଁ ଠାରେ ପାଲ୍ଭ ଲଗେଇଛ । କପିଳ ପାତ୍ରକୁ ଚିହ୍ନିନ । କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କୁ ଚିହ୍ନିନ ? ଗାଁଠାକୁ ଉଚ୍ଛନ୍ନ କରିବ ?
ରଘୁ—ନାହିଁ ଆଜ୍ଞା, ଗାଁଠାକୁ ଭାଙ୍ଗି ଦେବୁ ।
ସିନ୍ଧୁ—ଗ୍ରାମେ ଗ୍ରାମେ ପଞ୍ଚାୟତ କରି, ଅରଟ ପ୍ରଚାର କରି ଆମେ ଗାଁଠାକୁ ଭାଙ୍ଗି ଦେବୁ । ଆଉ ତମେ ରସଟିକି ନଗେଇ ଦେବ ।
କପିଳ—ଗାଁଠାକୁ କିଏ ଭାଙ୍ଗି ଦେବାକୁ ଯାଉଛି, ତମପରି ପାଜି ନା ମୁଁ ।
ସିନ୍ଧୁ—ଭେଟି ଦେଇ ଦେଇ ଆମେ ଗାଁଠାକୁ ଭାଙ୍ଗୁଛୁ ?
କପିଳ—ଅରେ କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ର, ଫଗୁମହାନ୍ତି ଆଉ ଜଣେ ଶ୍ୟାମ ବନ୍ଧୁ ଦାରୋଗା, ଜାଣନ୍ତି ।
ସିନ୍ଧୁ—ପାତ୍ରେ ସତ କହୁଛନ୍ତି, ଗାଁଠାକୁ ତମେ ଭାଙ୍ଗି ଦେଉନ ?
କପିଳ—ଆଉ ଗାଁକୁ ରଜାଙ୍କ ଅନୁଗ୍ରହ କିଏ ଆଣୁଛି ।·ମହା କରୁଣାବନ୍ତ ଅଶେଷ ଗୁଣାକର କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ର ଏକା କପିଳ ପାତ୍ରେ ଥିବାରୁ (ଗୃହିଁ ରହିବା)
ରଘୁ—ଆଖଡ଼ା ପିଲା ସଜା, ଲଗି, ମିଛ ଏସବୁ କଣ ।
କପିଳ—ଏ,ଏ, ଚୁପ୍ କର । ଗାଁଠାକୁ ମତେଇ···
ରଘୁ—ହଁ ଆମେ ଗାଁଠାକୁ ମତେଇ ସୁନାର ସ୍ୱର୍ଗ କରିବୁ । ଆମେ ଗଢ଼ିବୁ ରଣପୁର ଯେଉଁଠି ତମପରି କେତେଟା ଚରଣଚୁଟିଆଙ୍କୁ ଧରି ତମର ରଜା କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ର ନ ଥିବେ । ଆଉ କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କୁ ଧରି ନ ଥିବେ ଏ ମାଟିର ଗୋଟି ଫଉଜ । ଆମେ ଗଢ଼ିବୁ ସ୍ୱରାଜ ।
କପିଳ—ଏ, ସେମିତି ବକ୍ତୃତା କରନା, ରସଟିକ ନାଗିମିବ ଯେ । କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ···

ସିନ୍ଧୁ—କୁଅଡ଼େ ବାହାରିଲେ ପାଣେ—

ରଘୁ—ପାଣେ ବାହାରିଥିଲେ, ଆଜ୍ଞା, କୃଷ୍ଣଚନ୍ଦ୍ର, ନରେନ୍ଦ୍ର, ମହାପାତ୍ରଙ୍କ ଭେଟି ନେଇ ।

ସିନ୍ଧୁ—ହଇରେ ତମେମାନେ ସମସ୍ତେ ଭେଟି ନେଇ ଯାଉଛ (ଲୋକଙ୍କ ପ୍ରତି)

ବାମା—ଅଜ୍ଞା, ପାଣେ ଆମକୁ ଡାକୁଛନ୍ତି ।

ଗୀଳ—ସରବରାକାର ଆମକୁ ଭେଟି ଧରି ନେଉଛନ୍ତି ।

ସିନ୍ଧୁ—ହଉ ଯାଆନ୍ତୁ ଅଜ୍ଞା, କୃଷ୍ଣଚନ୍ଦ୍ର ନରେନ୍ଦ୍ର, ମହାପାତ୍ରଙ୍କ ରାଜ୍ୟରେ ଦେଓ୍ବାନ ଦାରୋଗାଙ୍କ ଶାସନରେ ଅପଣ ଏହି ନଗର ପ୍ରଜାମାନଙ୍କୁ ଧରି ଯାଆନ୍ତୁ ଭେଟି ଦେଇ ଅସିବେ ମଉକାଟ ପଡ଼ୁଛି ।

କପିଳ—ବେଶୀ କଥାବାର୍ତ୍ତା କରନ ।

ରଘୁ—ବୁଝିଲେ ପାଣେ, ତମର ଦାଲଲଗିରିରେ ନିଷ୍ପେଷିତ ପ୍ରଜାମାନଙ୍କର ଲହୁ ଲୁହରେ ରଣପୁର ନିଶ୍ଚୟ ଅଗକୁ ଯିବ, ପଛକୁ ଯିବ ନାହିଁ । ଅମେ ସଂକଳ୍ପ କରିଛୁ ରାଜାଙ୍କଠାରୁ ସ୍ୱାୟତ୍ତଶାସନ ହାସଲ କରିବୁ । ଦ୍ୱିତୀୟରେ ଗୋରା ଶାସନ ଭାରତରୁ ଲୋପ କରିବୁ ।

କପିଳ—(ହା,ହା,ହା) ଛତରା ରଘୁ ମହାନ୍ତି, ଆଉ ନିମକହାରାମ ସିନ୍ଧୁ ମିଶ୍ରେ•••ହା,ହା, ସ୍ୱରାଜ ଆଣିବେ ।...ଅରେ ଅଣୁ ଅଣୁ ରସଟିକ ଲାଗିଯିବ ଯେ ।

ରଘୁ—ହଁ, ହଁ, ଅମ୍ଭେମାନେ ସ୍ୱରାଜ ଆଣିବୁ । ଆଉ ତମେମାନେ କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ର, ଫଗୁ ମହାନ୍ତି, ଶ୍ୟାମବନ୍ଧୁ ଦାରୋଗାଙ୍କୁ ଚେଙ୍କିଧରି ଅମ୍ଭମାନଙ୍କ ଚୋଟି ଚିପି, ଦାବାକୁ ପାଦରେ ଦଳି ଚକଟି ଗୋଟାଏ ମଣ୍ଡାଣି ତିଆରି କରିବ—

କପିଳ—ହଇରେ ରଘୁମହାନ୍ତି, ସିନ୍ଧୁମିଶ୍ରେ ଆଉ ସେହିଟା ଗୋଟାଏ ଧନମାଳୀ ରାମ, ଅନନ୍ତ ବରାଡ ଦେଶକୁ ସ୍ୱାଧୀନ ଆଣିବେ,

ରଘୁ—ହଁ ହଁ ସେହିମାନେ ଆଣିବେ । ଇଂରେଜ ଶାସନର ଲୁହା ଜଞ୍ଜିରରୁ ଜନ୍ମଭୂମିକୁ ମୁକ୍ତ କରିବେ । ଆଉ ତମପରି

କେତେଟା ଦଲାଲ ଫୁଲମାଳ ପିନ୍ଧି ଦେଶଟାକୁ ମଶାଣି କରିଦେବେ ।

କପିଳ—ତମେ ସ୍ୱରାଜ ଆଣିବ—

ସିନ୍ଧୁ—ହଁ ଆଣିବୁ ।

ରଘୁ—ଅଦ୍ୟାପି ବେଳ ଅଛି, ସୂର୍ଯ୍ୟାଲୋକସ୍ନାନ ପୂର୍ବରୁ ଯଦି ପାହାନ୍ତିଆରେ ତୁମେମାନେ ନିଜର ଭ୍ରମ- ବୁଝିପାରି ପ୍ରଭାତ ତାରାରେ ମିଶିଯାଅ, ତାହାହେଲେ···ଇତିହାସ ତୁମକୁ ସ୍ୱାଗତ କରିବ ।

ସିନ୍ଧୁ—ତଥାପି ବେଳଅଛି ।

ରଘୁ—ପାଜି । ତଥାପି ବେଳ ଅଛି ।

ସିନ୍ଧୁ—ତମପାଇଁ ତଥାପି ଦ୍ୱାର ଉନ୍ମୁକ୍ତ ଅଛି ।

କପିଳ—ହୁଁ, ହୁଁ, କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ଅମଳରେ. କପିଳ ପାତ୍ର, ଅସମ୍ଭବ, ଅସମ୍ଭବ ।

ସିନ୍ଧୁ—ହଁ, ହଁ, କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ଅମଳରେ ତମକୁ ସ୍ୱରାଜ ଦେଖିବାକୁ ପଡ଼ିବ । ଗୋରା ଶାସନ, କାନକୁହା ଖର କୁହା ଶାସନ ଶେଷହେବ ।

କପିଳ—ଏ, କଏ ରେ ସବୁ । ଦାମା, ସହଦେବ, ନୀଳୁ, ଚାଲ ସବୁ ।

ନୀଳ—ସରବରାକାରେ ତମେ ଚାଲ···

କପିଳ—ତମେ ସବୁ ଆଗେ ଆଗେ ଚାଲ, ଚାଲ ଚାଲ···

ନୀଳୁ—ତମେ ଚାଲ···

କପିଳ—(ରଘୁ ଓ ସିନ୍ଧୁକୁ ଚାହିଁ) ଏ ବୁଢ଼ି ଛକ ନମକହାରାମ ଦଳ— ଏ ବୁଢ଼ି ଛକ । କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ ଅସମ୍ଭବ, ଅସମ୍ଭବ···

ରଘୁ—ଆହେ ପାତ୍ରେ, ତମପରି ନିମକହାରାମ ଦଳକୁ କୃଷ୍ଣଚନ୍ଦ୍ର ମହାପାତ୍ରେ···

କପିଳ—ଏ, ଏ, ସେମିତି କହନା, ତମକୁ ସାବାଡ଼ କରିଦେବ ।

ସିନ୍ଧୁ—ଚୁପ ଭୁଗେ—
କପିଳ—(ଭେଟ ବାଲ୍ଟିଙ୍କ ପ୍ରତି) କରେ ଅସରେ···
ରଘୁ—ନାହିଁ କେହୁ ମିବେନାହିଁ ।
କପିଳ—କରେ ଅସରେ । କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟଟି ।
ରଘୁ—ଠିଅହୁଅ—ତମେମାନେ ସବୁ ।
ସିନ୍ଧୁ—ଶୁଣ ନୀଳମଣି······
କପିଳପାତ୍ର—କରେ ବାମା, ସହଦେବ, ଛୋଟା, କରେ ନୀଳ—କରେ
ଅସରେ—
ସିନ୍ଧୁ—ଅହେ, କେହୁ ମିବେ ନାହିଁ । ତମେ ତମ ନରେନ୍ଦ୍ର ମହାପାତ୍ରଙ୍କ
ବାଟ ଧର, ନଇଲେ···
କପିଳ—ନଇଲେ—(ଗର୍ଜ୍ଜନ କର)
ରଘୁ—ନଇଲେ ଅର୍ଦ୍ଧଚନ୍ଦ୍ର···
କପିଳ—କରେ ବାମା, ଛୋଟା, କରେ ନୀଳୁ । ତମେ ସବୁ ପର ଭେଟି
ଆଣିଛ । ପଦ ପାଇବ । ରାଜଦ୍ୱାରୁ ସମ୍ମାନ ମିଳବ । ଅସ ମୋ
ବୋଲ କର । ଧରଭଙ୍ଗାଙ୍କ ସାଥିରେ ମିଶନ୍ତି ରସଟିକ ନାଗି-
ମିବ । ଅ, ଗୃଳଅସ ।
ସିନ୍ଧୁ—ଳଗିରଣି କଥାବାର୍ତ୍ତା କର ।
କପିଳ—ଚୁପ୍ କର ।
ସିନ୍ଧୁ—ଦେଖ, ପୁଣି ନାଲି ଦେଖାଉଛ
କପିଳ—କୃଷ୍ଣଚନ୍ଦ୍ର ନରେନ୍ଦ୍ର ଦେବଙ୍କ ରାଜ୍ୟରେ ନିମକହାରାମ··
ରଘୁ—ଅମେ ସିନା ଦେଇ ଟିଏ କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ
ନିମକହାରାମ, ତମେ ପର କୋଟି କୋଟି ଲକ୍ଷ ଲକ୍ଷ ପ୍ରଜାଙ୍କ
ହୃଦୟ ରାଜ୍ୟରେ ଦଲାଲ ନିମକହାରାମ······
ସିନ୍ଧୁ—ତମେ ଯାଅ, ଏଠୁ ଶୀଘ୍ର ଯାଅ ।
କପିଳ—କରେ ବାମା, କାହୁଁ ଅସ ?
ରଘୁ—କରେ ନୀଳ, ବାମା, କେହୁ ଯାଅନ୍ତି ।

କପିଳ—କରେ ଅସ, କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କର ପ୍ରଜା ତ ତମେମାନେ ।

ରଘୁ—କେହି ଯାଅନାହିଁ ।

ସିନ୍ଧୁ—କେହି କୃଷ୍ଣ ଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ପ୍ରଜା କୁହଁ, ଯାଅ, ଦଲାଲ କପିଳ ପାତ୍ର······

କପିଳ—ରସଟିକ ନାଗିବରେ ପୁଅ...ଅସ ସବୁ, ନଇଲେ ମୋ ତାଲିକାରେ ତମ ନାଁ···

ରଘୁ—ଯାଅ, ପୋଡ଼ିଦଅ ତମ ତାଲିକା—

କପିଳ—କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ତାଲିକା···

ରଘୁ—ଯାଅ, ଶୀଘ୍ର ଯାଅ...

କପିଳ—ଅଛି,...ଅଛି, ମୁଁ ଦେଖୁଛିରେ ପୁଅ, ବିଛମନ୍ତ ନଜାଣି ସାପ ଗାତରେ···ହାତ···

ରଘୁ—ଯାଅ, କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ପ୍ରଜା···ଦଲାଲ ପ୍ରଜା···

(କପିଳପାତ୍ର ଫେରିଯିବା—ପୁଣି ଫେରି)

କପିଳ—କରେ ଅସ, ନଇଲେ ଭେଟିତକ ମୋ ହାତରେ ଦେଇଦଅ । ମୁଁ ଛମୁରେ ଜଣା କରିଦେବି ।

ରଘୁ—ଯାଅ, ତମ ଛାମୁଙ୍କର ପଦହଡ଼ ପକେଇବ ଯାଅ । (କପିଳର ପ୍ରସ୍ଥାନ )

ସିନ୍ଧୁ—ଅରେ ଗାନ୍ଧ—ତମେ ସବୁ ପ୍ରଜା ମଣ୍ଡଳ ଅଫିସିକୁ ଚାଲ ।

ଘେଣ୍ଟାରାମ—ବାବୁ ମୋତେ କପିଳ ପାତ୍ର ମାରିବ ।

ସିନ୍ଧୁ—ଅରେ ଭୟନାହିଁ, ତମେ ସବୁ ଚାଲ···

ଘେଣ୍ଟା—କହୁଛ, ରସଟିକ୍ ଅଜି ନଚେଇ ଦେବ···

ରଘୁ—ଅରେ ସବୁ ବେପରୁଆ ହୋଇଚାଲ—ଅମେ ଦେଶକୁ ସ୍ୱାଧୀନ କରିବା କି ଦଲାଲ କପିଳପାତ୍ର···

ସିନ୍ଧୁ—ତମେ ସବୁ ପ୍ରଜାମଣ୍ଡଳ ଅଫିସିକୁ ଚାଲ । ଅମେ ଯାଉଛୁ ଏଠୁ ଅର ଗାଁକୁ···

( ସିନ୍ଧୁ ରଘୁଙ୍କ ପ୍ରସ୍ଥାନ)

ଝୋଟା ବାମ—ମୁଣ୍ଡରେ ହାତ ଦେଇ, ଅରେ ଭାଇ ମୁଁ ଯାଉଥାଅନ୍ତି—
ଛମୁଙ୍କ ପାଖକୁ ଭେଟି ନେଇ
ନୀଳ—ଅରେ ଚୁପ୍ କର...କପିଳ ପାଣ୍ଡ ପର ଛମୁରୁ ଛମୁରୁ ହୁଅନା—
ଚାଲ, ଚାଲ ଯିବା, ସମସ୍ତଙ୍କୁ କହିବା କେହି କପିଳ ପାଣ୍ଡ ସଙ୍ଗରେ
ଭେଟିନେଇ ଛମୁଙ୍କ ପାଖକୁ ଯିବେନାହିଁ । ଚାଲ ଚାଲ...
ଝୋଟ ବାମ—ଅରେ ଭାଇ, ତା ରସକିକରୁ ଭଯ୍...
ନୀଳୁ—ଅରେ ରଘୁ, ମହାନ୍ତି, ସିନ୍ଧୁମିଶ୍ରେ, ଧନମାଳୀ ସାମ, ଯାହା
କହିବେ କରିବା, ଅଉ ଡର କାହାକୁରେ......

(ପ୍ରସ୍ଥାନ)

ପ୍ରକ୍ଷେପଣ

---

## —୩ୟ ଅଙ୍କ ଦ୍ୱିତୀୟ ଦୃଶ୍ୟ—

(ପ୍ରଜାମଣ୍ଡଳର ଅଫିସ—ଉତ୍କଳଜା ଘର ଟେଣ୍ଡିଏ, ମାଣ୍ଡ
କାନ୍ଥ ଦହରେ ଝୁଲୁଛି ମହାତ୍ମାଗାନ୍ଧିଙ୍କର ଫଟୋ, ଉତ୍କଳମଣି,
ଜବାହରଲାଲ ନେହୁରଙ୍କ, ଫଟୋଗୁଡ଼ିକରେ ଫୁଲମାଳ ଖଣ୍ଡେ ଖଣ୍ଡେ
ଦେଇ ପୂଜା ଭାବମଗ୍ନ ହୋଇଛନ୍ତି କମଳା, ଘର ଭିତରେ
ସାମାନ୍ୟ କାଗଜପତ୍ର, ଟେବୁଲ ଚଉକି ବେଞ୍ଚ—ଅରଟ ଦୁଇଟେଣ୍ଡି,
କାନ୍ଥରେ ଝୁଲୁଛି ତ୍ରିରଙ୍ଗ ପତାକା—(କମଳା ପ୍ରତ୍ୟେକ ଫଟୋଉପରେ
ଫୁଲମାଳ ଦେଇ ସାରି ସୂତା କାଟିବା ସମୟରେ ପ୍ରବେଶକଲେ ରଘୁ
ହାତରେ ଖଦଡ଼ ବ୍ୟାଗ ଓ ମୁଣ୍ଡରେ ଗାନ୍ଧୀ ଟୋପି )
କମଳା—(ସୂତା କଟା ଛାଡ଼ି ଠିଆ ହୋଇ ପଡ଼ିବା)
ରଘୁ—ନମସ୍ତେ, କମଳା—
କମଳା—ନମସ୍କାର ରଘୁଭାଇ ।
ରଘୁ—ମୋର କଣ ବିଳମ୍ବ ହେଲା କି ? କାହିଁ ଏପର୍ଯ୍ୟନ୍ତ କେହି ଆସି
ନାହାନ୍ତି, ନା କେହି ଆସିଥିଲେ...

କମଳା—ନା, କେହି ଅସିନାହାନ୍ତି ।

ରଘୁ—ବୋଧହୁଏ ସବୁ ଆସୁଥିବେ...

କମଳା—ଆମର ସବୁ କାଗଜପତ୍ର ତେବେ ଠିକ୍‌ଠାକ୍ କରିଦେବା, ପ୍ରଜା-
ମଣ୍ଡଳର ଶପଥ ପତ୍ର ଗୁଡ଼ାକ, କେଉଁଠି ଅଛି ?

ରଘୁ—ଅଲମାରି କେତେ ଗୁଡ଼ିଏ ତ ଥିଲା । କାଲି ଦବାକର କଟକରୁ
ଗୁଡ଼ାଏ ମଗାଇ ଆଣିଛି । ଏହିକ୍ଷଣି ଆଣିବ ।...କମଳା...
ତମେଥିଲେ,...ସବୁ, ବେଶ୍...

କମଳା—ଏହି ଅବସ୍ଥାରେ ଯେ ରହିଥାଆନ୍ତା, ସେ ସବୁ ଭୁଲିଯାଇ
ଥାଆନ୍ତା......

ରଘୁ—ତଥାପି କମଳା, ନାରୀ ଜାତିର ହାତ ଯେଉଁଠି ବାଜେ...
ତାହା କି ସେବା କି ଆଦର୍ଶରେ ପୂର୍ଣ୍ଣ ହୋଇଉଠେ...

କମଳା—ରଘୁଭାଇ, ତମେ ଢେଙ୍କାନାଳ ପ୍ରଜାମଣ୍ଡଳର ଦାବିପତ୍ର
ପଢ଼ିଲଣି ?

ରଘୁ—ସମାଜ କାହିଁ ?

କମଳା—ଡାକରେ ଆମ ପ୍ରଜାମଣ୍ଡଳକୁ ଗୋଟିଏ ଆସିଥିଲା ।

ରଘୁ—ତା ବ୍ୟତୀତ, ଦବାକର ବାବୁ କହୁଥିଲେ, ସମାଜରେ ପ୍ରକାଶ
ପାଇଛି ।

କମଳା—(କେତେ ଗୁଡ଼ିଏ କାଗଜ ଆଣି ଦେବା) ହେଇ ଦେଖନ୍ତୁ ।

ରଘୁ—ଜାଣିଲ କମଳା, ରାଜାଗୁଡ଼ାକ ସବୁଠି ଏକା ରକମ ନୀତି
ଧରିଛନ୍ତି ।

କମଳା—ଖାଲି ରାଜା ନୁହେଁ, ରାଜାଙ୍କର ଦେୱାନ ଦାରୋଗା
ମଧ୍ୟ...

ରଘୁ—( କାଗଜ ପଢ଼ୁ ପଢ଼ୁ ) ଢେଙ୍କାନାଳରେ ଯେପରି, ରଣପୁରରେ
ଦଅନ, ରଣପୁରରେ ଦେୱାନତ, ଢେଙ୍କାନାଳରେ ପୋଲିସ ।

କମଳା—ମନୁଷ୍ୟର ପ୍ରକୃତି ସବୁଠି ଏକା ରୂପରେ ଦେଖାଦିଏ ।

ରଘୁ—ଏକ ରୂପରେ ନୁହେଁ କମଳା, ଭିନ୍ନ ଭିନ୍ନ ରୂପରେ—

କମଳା—ରଘୁଭାଇ, ରାଜାଗୁଡାକ କଣ ସବୁ କାଳରେ ଏଇପରି...

ରଘୁ—ସବୁ କାଳରେ ନ ହେଲେ ମଧ୍ୟ ବର୍ତ୍ତମାନତ ଅତ୍ୟାଚାରୀ—

କମଳା—ଜାଣିବ ରଘୁଭାଇ, ଯେଉଁ କାନବାଟେ କଥା ଚାଲେ ସେଠି ଆଉ ଶାସନର ମୂଲ୍ୟ ନାହିଁ ।

ରଘୁ—ଦେଖୁଛନ୍ତ ତମେ, ତମ ବାପା, ତା ପରେ ତମ ଭାଇଙ୍କୁ ଜାଣି ପାରି ଆଉ ଦୋଷ ମଧ୍ୟରେ ଦେଓ୍ୱାନ ଦାରୋଗାଙ୍କୁ ସମାଲୋଚନା କରିବା—

କମଳା—ଛି ଛି ରଘୁଭାଇ ତମେ ମୋତେ କହନା, ପରକଥାରେ ରାଜା ଚାଳିତ ହୁଏ । ମୁଁ ବିଶ୍ୱାସ କରିପାରୁନି—

ରଘୁ—କମଳା, ତମେ ରାଜାମାନଙ୍କର ଇତିହାସ ଦେଖ, ଖାମ ଖିଆଲ ଅହଙ୍କାର, ଘୃଣା, ଅସଦାଚରଣ ଅଯଥା କୋପ ପାଗଳାମି...
ଏସବୁ ତଥାକଥିତ ରାଜାମାନଙ୍କର ଇତିଶ୍ରୀ···

କମଳା—କିନ୍ତୁ ଭାଇ, ତମେ ସିନା ଏକଥା କହୁଛ, ସେହି ଇତିହାସରେ ମଧ୍ୟ ଅନେକ ରାଜାଥିଲେ; ବିକ୍ରମାଦିତ୍ୟ ଥିଲେ, ଆମ ଓଡ଼ିଶାରେ ଗଜପତି ଥିଲେ ।

ରଘୁ—(ଖୁବ୍ ହସି) କମଳା, ତମେ କାହା ସଙ୍ଗରେ କାହାକୁ ତୁଳନା କରୁଛ । କାହିଁ ସର୍ବଗୁଣାଲଙ୍କାର ଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ ଉତ୍କଳବର୍ଗେଶ୍ୱର ମାନଙ୍କଯ୍ୟ ଗୁଣରେ ସେମାନେ ଦୀପ୍ତିମନ୍ତ ଚିର ଉଜ୍ଜ୍ୱଳ ... ସେମାନଙ୍କର ଗୌରବରେ ପ୍ରଜାମାନେ ପ୍ରତିପାଳିତ ହେଉଥିଲେ, ସତ୍ୟ ଧର୍ମ ନୀତି ପ୍ରତିପାଳନ ଆଶ୍ରିତ ପ୍ରଜାମନୋରଞ୍ଜନ ସାଧୁ ସନ୍ଥ ଗୁଣୀ ପଣ୍ଡିତମାନଙ୍କର ଗୁଣ ଗ୍ରାହକ, ଅମଳ କମଳ ନନ୍ଦିତ କବି ବନ୍ଦିତ ପ୍ରଜାପ୍ରିୟ ରାଜା ପବିତ୍ର ତପୋବନ ସ୍ନିଗ୍ଧ ରୁଚିର ରାଜର୍ଷି ଜୀବନର ପ୍ରତୀକ । ଆଜି ସବୁ ସ୍ୱପ୍ନ କମଳା ଖାଲି ସ୍ୱପ୍ନ । ଆଜି ଖାଲି ଅତ୍ୟାଚାର ବେଠି ଯାତନା, ଅପମାନ ପରକଥା ଖଟକୁହା କାନକୁହାଙ୍କ ପ୍ରକୋପ ।

କମଳା—ସତେ ରଘୁଭାଇ, ବେଳେ ବେଳେ ଇତିହାସର ପୃଷ୍ଠା ଉଦ୍‌ଘାଟନ କଲେ ଓ ଆଜିର ପ୍ରଜାମାନଙ୍କର କାର୍ଯ୍ୟକଳାପ ଦେଖିଲେ କେମିତି ଗୋଟାଏ ଖାପଛଡ଼ା ଲାଗେ ।

ରଘୁ—ଠିକ୍ ଅନୁମାନ କରିଛୁ କମଳା । ସବୁ ଖାପ ଛଡ଼ା, ଶାସନ ଖାପ ଛଡ଼ା କିନ୍ତୁ ଜାଣି ରଖ, ମନୁଷ୍ୟତାରେ ଯେତେବେଳେ ଖାପ ଛଡ଼ା ଦେଖାଦିଏ, ସେତେବେଳେ ଶତ ସହସ୍ର ଶହୀଦ ନାଗ ଚଞ୍ଚଳ ହୋଇ ଉଠନ୍ତି ।

କମଳା, ଏହି ମୈନାକ, ଏହି ଚିର ଶ୍ୟାମାୟମାନ ପର୍ବତ ତଳରେ ରଣପୁର ପୁରୁଣାଗଡ଼ । କେତେ ଭୂପତିଙ୍କର ଆଶୀର୍ବାଦରେ ଏହି ଗଡ଼ର ପ୍ରାକୃତ ସଂଜତିର ଭାଗ୍ୟବାନ ହୋଇଥିବେ । ଦୟା ଦାକ୍ଷିଣ୍ୟ କାରୁଣ୍ୟର ସ୍ରୋତ ଭୂପତି ପ୍ରାଣରୁ ପ୍ରବାହିତ ହୋଇ ମହାମାନବିକତାର ସମୁଦ୍ର ଲକ୍ଷ ପ୍ରାଣରେ ସଂଗୃହ କରିଥିବ । ଏହି ଗଡ, ଗଡଖାଇ, ଦୁର୍ଗ । ଏହା ମଧ୍ୟରେ ମନ୍ଦାକିନୀ ପ୍ରବାହିତ । ଉଚ୍ଛୃଙ୍ଖଳ ଜଳସ୍ରୋତ ଦୁର୍ଗର ବାଲିବଣକୁ ପ୍ଲାବନ କରି ଦେବୀପୂଜା............ସ୍ୱର୍ଣ୍ଣ ଶସ୍ୟର ଝଲଲହରୀ ଖେଳାଇ ଦେଇଥିବ ଆଶାର ଇନ୍ଦ୍ରଧନୁରେ, ସହସ୍ର ପ୍ରଜାର ପ୍ରାଣାକାଶ ଉଦ୍ଭାସି ଉଠିଥିବ । ଆଜି ସବୁ ଯୋଡା ପାଉଁଶର ସ୍ତୂପ ।

କମଳା—ରଘୁ ଭାଇ, ଆଜି ଦେଶ କଣ ହେଲା ?

ରଘୁ—ଏହି ଦେଶ କେତେଜଣ ଶିଖି ମହାଇଙ୍କ ଯୋଗୁଁ ଏପରି ହେଲା । ଯଦି ଜୟଚନ୍ଦ୍ର······(ରଘୁ କାନ୍ଦି ପକାଇବା)

କମଳା—ଆଖିରେ 'ଲୁହ କାହିଁକି ? ଦେଶ ସେବା କରିବାକୁ ଯାଇ, ଭାବପ୍ରବଣତା······

ରଘୁ—ହଁ କମଳା, ଭାବପ୍ରବଣତାହିଁ ଅନେକ ସମୟରେ ମଣିଷକୁ ଆଗାମୀ ଯୁଗର' ସତ୍ୟ ଖୋଜିବାରେ ପ୍ରେରଣା ଦିଏ । ମୁଁ କହୁଥିଲି କମଳା; ଇଂରେଜ.....ଫିରିଙ୍ଗି ଏହି ଦେଶରେ କିପରି ପଶିଲେ । ସେ ଅନେକ ଦିନ ତଳର ବିସ୍ମୃତ ଲଜ୍ଜିତ ଇତିହାସ । ଯେଉଁଦିନ ଦେଶଦ୍ରୋହୀ ଜୟଚନ୍ଦ୍ର···ପୃଥ୍ୱୀରାଜ ବକ୍ଷରେ ଛୁରୀଘାତ କରି ବିଧର୍ମୀ ମହମ୍ମଦ ଘୋରୀକୁ ଦେଶକୁ ଡେକି ଆଣିଥିଲା, ସେହି ଦିନଠାରୁ ଭାରତରେ ସ୍ୱାଧୀନତାର

ସୂର୍ଯ୍ୟ ହିମାଳୟର ଅସରନ୍ତି କୁହୁକ ଅଭେଦ୍ୟ ଗୁହା ଅନ୍ଧକାରରେ ଅସ୍ତ ହେଲେ । ସେହି ଦିନଠାରୁ ଏ ଦେଶରେ ବିଦେଶୀୟମାନଙ୍କର ଅତ୍ୟାଚାର ଚାଲିଛି ।

କାହିଁ ପୁରୁଷୋତ୍ତମ ଦେବ, କାହିଁ ମୁକୁନ୍ଦ ଦେବ, ସର୍ବଶେଷରେ ୧୮୦୩ । ଓଡ଼ିଶାକୁ ଫିରିଙ୍ଗି ଅଧିକାର କଲେ । ବର୍ତ୍ତମାନ ଇଂରେଜମାନଙ୍କର ନିର୍ମମ ଶାସନ ଚାଲିଛି । ଆଉ ଦଳେ ରାଜା ମଧ୍ୟ ଦେଶରେ ତାଙ୍କର ଦଲାଲ ହୋଇଛନ୍ତି । ଆଉ ରାଜା ରାଜୁଡ଼ାଙ୍କର ପୁଣି ଆମ ଦେଶର କେତେ ଅମଲା ଅଫିସର ହାତ ବାରିସି ହୋଇଛନ୍ତି ।

କମଳା—ହଁ, ରଘୁଭାଇ, ଇଂରେଜ ଶାସନକୁ ଦୂର ନ କଲେ, ରାଜାମାନେ ଲୋକମାନଙ୍କୁ ଶାସନ କ୍ଷମତା ନ ଦେଲେ ବିପ୍ଳବ ହେବ ।

ରଘୁ—ହେବ କାହିଁକି ? ଚାରିଆଡ଼େ ମନ୍ଦିରଗଡ଼ରେ ଏକ ଶୀତଳ ବିପ୍ଳବ ହେଉ ନାହିଁକି ? କିନ୍ତୁ କମଳା, ଏ ବିପ୍ଳବ ଅହିଂସା ବିପ୍ଳବ । ଅଟେ ରାଜା ରାଜୁଡ଼ାଙ୍କ ବିରୁଦ୍ଧରେ ଇଂରେଜ ଶାସନ ବିରୁଦ୍ଧରେ ହିଂସା ଗୁଳାଗୁଳା ନେଇ ଠିଆ ହୋଇ ପାରିବା ନାହିଁ ।......

କମଳା—ଠିକ୍ କଥା, ଏ ରାଜାଙ୍କୁ ଦେଖିଲେ ମନରେ ଦୟା ଆସେ ।

ରଘୁ—କଣ ଥିଲା ଏ ରାଜ୍ୟ, କଣ ହେଲା । ଏହି ରାଜାମାନେ ଫିରିଙ୍ଗିଙ୍କୁ ସାହାଯ୍ୟ କରି ଚିରଦିନ ପାଇଁ ବୈଦିକ ଭାରତରେ କଳଙ୍କ ରଖିଗଲେ ।

କମଳା—ମହାତ୍ମାଗାନ୍ଧୀ ଏ ଆନ୍ଦୋଳନ ଆରମ୍ଭ କରି ନ ଥିଲେ—

ରଘୁ—ଆନ୍ଦୋଳନ ଆରମ୍ଭ ହୋଇଛି ମାତ୍ର କମଳା, ଲକ୍ଷ ସ୍ଥଳରେ ପହଞ୍ଚିବାକୁ ବହୁତ ସମୟ ଅଛି । ପୂର୍ବାକାଶରେ ସୂର୍ଯ୍ୟ ବାଲ୍ୟରେ ଉଠେ କମଳା । ଯେତେବେଳେ ତମିର ଥାଏ, ସୂର୍ଯ୍ୟ ସେତେବେଳେ କେତେ ଦୂରରେ...... କଳ୍ପନା ମଧ୍ୟ ସେତେବେଳେ ପାଏ ନାହିଁ ।

କମଳା—ବହୁତ ବେଳ ହେଲା......କେହିତ ଆସିଲେ ନାହିଁ ।

ରଘୁ—ବର୍ତ୍ତମାନ ଆସିଯିବେ । ହଁ, ଆଉ ଗୋଟିଏ କଥା କମଳା... ସମସ୍ତଙ୍କୁ ପ୍ରଜାମଣ୍ଡଳ ଭିତରେ ଏକ ମନପ୍ରାଣରେ କାମ କରିବାକୁ ପଡିବ । ଲକ୍ଷ୍ୟ ଏକ ହେଲେହେଁ...କେତେବେଳେ କାହା ମନକୁ କେତେ ଭାବ ଛୁଉଁଛି...

କମଳା—ସେଥିପାଇଁ ଧନମାଳୀ ବାବୁ କହୁଛନ୍ତି ସମସ୍ତଙ୍କୁ ମିଶେଇ ନେଇ କାମ କରିଯିବା ଉପଯୁକ୍ତ ନେତାର କାମ...

ରଘୁ—ତା ତ ଠିକ୍...ସମସ୍ତଙ୍କ ମନ ଧରି କରିବା ।

(ଏତିକବେଳେ ପ୍ରବେଶ କଲେ ଅର୍ଜ୍ଜୁନ ରାଉତ, ପଦନ ଦାସ, ସିନ୍ଧୁ ମିଶ୍ରେ, କାର୍ଯ୍ୟ ସେନାପତି, ଦିବାକର ପରିଡା, ବଂଶୀ ପଣ୍ଡା, ଅନନ୍ତ ବରାଡ଼, ଅନ୍ତର କଲସ) ସମସ୍ତେ ପ୍ରଜାମଣ୍ଡଳର କର୍ମୀ । )

ରଘୁ—ନମସ୍କାର···ନମସ୍କାର···ନମସ୍କାର···

କମଳା—ନମସ୍କାର···

ଅର୍ଜ୍ଜୁନ ରାଉତ—ଦଣ୍ଡବତ ଭାଇ (ସମସ୍ତେ ଦଣ୍ଡବତ ଯଥାବିଧି ଜଣାଇଲେ) ।

ରଘୁ—ଏତେ ବିଳମ୍ବ କାହିଁକି ହେଲା ?

ପଦନ—ସମସ୍ତେ ଆସୁଛୁ ତକାଡ଼କି ହୋଇ···

କାର୍ଯ୍ୟ ସେନାପତି—ରଘୁ ଭାଇ, ସଭାପତି କାହାନ୍ତି ।

ରଘୁ—ବର୍ତ୍ତମାନ ଆସିବେ ।

କାର୍ଯ୍ୟ—ସମସ୍ତେ ଶୁଣ, ବଡ଼ ସାବଧାନ ହୋଇ କଥାବାର୍ତ୍ତା କର । ଯେମିତି ଟିକିଏ ହେଲେ ସୁରାକ କେହି ନ ପାଏ...

ବରାଡ଼—ସେମିତି ହେଲେ କାନ୍ଥର କାନ ଅଛି ।

ସିନ୍ଧୁ—ଯାହାହେଉ, କମଳା ଆଜି ବେଶ୍ ଫଟୋ ଗୁଡିକୁ ସଜାଇଛି ।

କାର୍ଯ୍ୟ—କମଳା ସବୁଦିନେ କାମଟି ଠିକ୍ ଠିକ୍ କରେ...

ବରାଡ଼—ହଇ ହେ, ବର୍ତ୍ତମାନ ଗୋଟାଏ ଆଲୋଚନା ପଡୁ ।

କାର୍ଯ୍ୟ—ସଭାପତି ଆସନ୍ତୁ...

ବଗଡ—ତୁ ତ କଣ ଏମିତି ହେଉଚ୍ଛୁ—
କାଧୁ—ସେମିତି ବାଜେ କଥା ପକାନା—
ରଘୁ—ବଗଡ଼ ଭାଇ ଗୋଟିଏ କାହ୍ନ କାର୍ଯ୍ୟପନ୍ଥା ଗ୍ରହଣ କରନ୍ତୁ । ଗୃହୁଁ ଗୃହୁ ଅସି ନଭେମ୍ବର ୧୯୩୮ ହେଲା ।
ପଦନ—ରଘୁ ଭାଇ, ମୁଁ ଗୋଟିଏ କଥା କହିବ...
ରଘୁ—କଣ କୁହନ୍ତୁ—ପ୍ରଜାମଣ୍ଡଳ ଭିତରେ ଅନ୍ତଃତ, ସେତିକ ଅଛି ।
ପଦନ—ଅମକୁ ସ୍ପଷ୍ଟ ବିଦ୍ରୋହ ଘୋଷଣା କରିବାକୁ ହେବ—
ସିନ୍ଧୁ—ଏକା କଥା, ମେଳ ଯାହା, ବିଦ୍ରୋହ ।
ରଘୁ—ହେଲା, ଅମେ ବିଦ୍ରୋହ କରିବୁ, କିନ୍ତୁ···ଅମର ତ ଅହିଂସା ହେଲା ବ୍ରତ । ସତ୍ୟାଗ୍ରହ ହେଲା ଅସ୍ତ୍ର···
ପଦନ ଦାସ—ସେ ବାଟରେ ଗଲେ, ଅମେ ସହଜରେ ପହଞ୍ଚିବା ନାହିଁ ।
ଅର୍ଜୁନ ରାଉତ—ମୋତେ ସେ ବାଟ ଭଲ ଦିଶୁନ...ଫଗୁ ମହାନ୍ତି ଉପରେ, ଏ ଅମଲାଙ୍କ ଉପରେ, ଗୋଠା କେତେ ନ ହେଲେ ଅମେ ପାରିବାନି···
ସିନ୍ଧୁ—ଢେଙ୍କାନାଳରେ ଏବେ କଣ କଲେ ? ଅମ ହାତରେ ମସଲ୍ଲ କାହିଁ ?
କାଧୁ ସେନାପତି—ମସଲ୍ଲ ଥିଲେ ମଧ୍ୟ, ରକ୍ତପାତ କରି ଅମେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବା ନାହିଁ ।
ରଘୁ—ମୋର ସେହି ମତ । ବରଂ ଚାଲ ଅସହଯୋଗ ଅରମ୍ଭ କରି-ଦେବା । ଜେଲ ଯିବା—ଅଣ୍ଡର ଗ୍ରାଉଣ୍ଡରେ ରହିବା...
ଅର୍ଜୁନ ରାଉତ—ହିଂସା, ରକ୍ତପାତ ନ ହେଲେ, ଅଜ୍ଞା, ଏ ରଣପୁର ଅସୁ ପଡ଼ିବ ନାହିଁ ।
ରଘୁ—ରାଉତ ଭାଇ ତା ହୋଇ ପାରେ ନା—
ଦିବାକର—ନାନା, ହିଂସା ରକ୍ତପାତ କରି ଅମେ ଇଂରେଜ ସରକାରର ଗୁଳିଗୋଳା ଉପରେ ଡିଷ୍ଟି ପାରିବା ନାହିଁ ।
କାଧୁ—ତମେ ରାଉତ ବୁଝି ପାରୁନ । ପୁଲିସର ଗୋଟେ ବନ୍ଧୁକ ଅଗରେ ଅମ ପ୍ରଜାମଣ୍ଡଳ ସବୁ ଧ୍ୱଂସ ହୋଇଯିବ ।

ସିଂଧୁ—ଯାହାହେଉ, ଆମେ ଗୋଟାଏ କର୍ମପନ୍ଥା ଧରିବା, ଲୋକଙ୍କୁ ଆଗ ଖଦଡ଼ ପିନ୍ଧାଇଲେ...

ଦିବାକର—ଖାଲି ଲୁଗା କାହିଁକି, ସୂତାକଟା ମଧ୍ୟ ।

ରଘୁ—ଆମେ ତ ଭାବିବୁ, ୧୪କୋଶ ପାଇଁ ଗୋଟିଏ 'ପଲ୍ଲିମଙ୍ଗଳ' କେନ୍ଦ୍ର ଗଢ଼ି ସେଥିରେ କେତେକ ରଚନାତ୍ମକ କାମ ଆରମ୍ଭ କରି ଦେବା···

ସିନ୍ଧୁ—କିଛି ନ ହେଲେ; ଲୋକେ ହାତରେ ସୂତାକାଟି ଲୁଗା ପିନ୍ଧନ୍ତୁ । ଆଗ ଗୋଟେ କିଛି ହେଉ—ତା'ପରେ ପୁଣି ଅନ୍ୟ କଥା ଦେଖିବା—

ସିନ୍ଧୁ—ହଁଏ, ସ୍ୱେଦବାସୀ ବସ୍ତ୍ରଲଙ୍କର କଣ ସେହି ନିର୍ବାସନ ଦଣ୍ଡ କାଏମ ରହିଲା ।

ରଘୁ—ତୁମେ କଣ ଭାବୁଛ । ରାଜା ଶାସନରେ, 'ଦେଓ୍ୱାନ ଦାରୋଗା ଯୁଗରେ ବସ୍ତ୍ରର ଥାଏ ?

ବାସନ୍ତ—ହଁ ଏ, ଆଜି ତ ତୁଆଡ଼େ ବଡ଼ ସକାଳୁ ଦାରୋଗା ପୁଲିସ କେତେ ଜଣଙ୍କୁ ନେଇ ବାଉଁଶଗଡ଼ ଆଡ଼େ ଯାଉଥିଲା ।

ସିଂଧୁ—ସେ ଯାଉଛନ୍ତି, ଲୋକଙ୍କୁ ଧମକେଇ ମିଛସାକ୍ଷୀ କରି କେତେ ଜଣଙ୍କୁ ଧରିବେ । (ଏତିକିବେଳେ ଧନମାଳୀ ରାମଙ୍କ ପ୍ରବେଶ)

ସିଂଧୁ—ହେଇଟି ତ ଆସିଲେଣି (ସମସ୍ତଙ୍କର ନମସ୍କାର)

ରଘୁ—ଆଜ୍ଞା, ବହୁତ ବିଳମ୍ବ ହେଲା ।

ଜିଧୁ—ତମେ ତୁଆଡ଼େ ଗଲ କାହିଁ, ମୁଁ ତ ଗୋପାଳପୁରଠାରୁ ଆସିଲି ।

ଧନମାଳୀ ରାମ—ରହିଗଲି । ପାଞ୍ଚକାଠି ପରା, କେତେଗୁଡ଼ାଏ ଲୋକଙ୍କୁ ପୁଲିସ ଜବତ କରିଥିଲା ।

ସିଂଧୁ—'ମିଛ ସାକ୍ଷୀ କେଶ' ହୋଇଥିବ ।

ରଘୁ—ଅଜି ସଭା କାର୍ଯ୍ୟ ଆରମ୍ଭ କରିବା···

ଧନମାଳୀ—ହଁ,

କମଳା—ମୁଁ ତେବେ ଟିକିଏ ଆସେ ।

ଧନମାଳୀ—ନାହିଁ ମା ତୁ ଟିକିଏ ବସ । ତୁ ନ ଥିଲେ ପ୍ରଜାମଣ୍ଡଳ କେବଠୁଁ...

ନିଧି—ପ୍ରକୃତରେ ସେ ବହୁତ କାମ କରିଛି ।

ରଘୁ—ବାପାଙ୍କୁ ନିର୍ବାସନଦଣ୍ଡ, ଭାଇଙ୍କୁ ମଧ୍ୟ···ଯାହାହେଉ, କମଳା ବାପା ଭାଇଙ୍କର...

ସିଂଧୁ—ପ୍ରକୃତ କନ୍ୟା ଏବଂ ଭଗିନୀ । ବର୍ତ୍ତମାନ ତାକୁ ସମୁଦାୟ ଲକ୍ଷ୍ମୀ-ମଙ୍ଗଳ ଦାୟିତ୍ୱରେ ରଖ— (କମଳା ବସି ସୂତା କାଟିବା)

ବସନ୍ତ—ଆଜିର ସଭାରେ ଆସନ୍ତା ଦୁଇ ମାସ ପାଇଁ Programme କର ।

ସିଂଧୁ—ଯାହାହେଉ, ସମସ୍ତଙ୍କର ଗୋଟାଏ ପ୍ରସ୍ତାବ ହେଉ···

ବନମାଳୀ—ମୁଁ କହୁଛି, ସିଂଧୁ ମିଶ୍ରଙ୍କୁ ସଭାପତି କର । ପଦଦାସ ଆଉ ରଘୁ ବାବୁଙ୍କୁ ସଂପାଦକ ଭାର ଦିଅ, ଦିବାକର ଆଉ ବସନ୍ତଙ୍କୁ ଅଫିସ ସେକ୍ରେଟେରୀ କର । ନିଧି ବାବୁ ମାଳ ଅଂଚଳରେ ରହନ୍ତୁ । ତାଙ୍କୁ ସେ ଅଞ୍ଚଳ ଛାଡ଼ି ଦିଅ । ଅର୍ଜ୍ଜୁନ ରାଉତ, ବଂଶୀ ପଣ୍ଡା, ମୁରଲୀ ଦାସ, ଏମାନେ ଭିତରେ ରହନ୍ତୁ । ଯେତେ-ବେଳେ ଯାହା ଘଟିବ ସେମାନେ ସେହି ଅନୁସାରେ କାଗଜପତ୍ର ଗଢ଼ିବେ । ହରିଜନ କାମ ପାଇଁ ଅଲଗା କେତେଜଣ କର୍ମୀଙ୍କୁ ରଖିବା···

ରଘୁ—ମୁଁ ଆଜ୍ଞା, ଟିକିଏ କଥା କହୁଛି—ମାନେ ସମୁଦାୟ ରଣପୁରକୁ ଦୁଇଭାଗରେ ବାଣ୍ଟି ଦିଅନ୍ତୁ । ଆପଣ ଠାଙ୍ଗି ସେପଟ ଧରି କାମ କରନ୍ତୁ । ବସନ୍ତ ବାବୁ ପଶ୍ଚିମ ମାଳ ଦାୟିତ୍ୱରେ ରହନ୍ତୁ । ଆଉ ଦୁଇଜଣ ସୁନାଖଳା ଏବଂ ମାଳକୁ କେନ୍ଦ୍ର କରି ରହନ୍ତୁ । ଆମର ଅନେକ ସମୟରେ କାମ ଛିନ୍ନ ବିଚ୍ଛିନ୍ନ ହୋଇଯାଉଛି ।

ସିନ୍ଧୁ—ଆଉ ଗୋଟିଏ କଥା, ଆମ ମଧ୍ୟରୁ ଜଣେ ପର୍ବପରି ସରକାରୀ ସି. ଆଇ. ଡ଼ି. ଭାବରେ ଛଦ୍ମବେଶରେ ରହୁ । ଆମର ଭିତରେ ରହୁଥିବ, ଆମର ବିରୁଦ୍ଧରେ କହୁଥିବ । ଯେପରି ଆମ ପନ୍ଥା ପାଇବେ ନାହିଁ ।

ପଦ ଦାସେ—ମୁଁ କହୁଛି, ସେଥିପାଇଁ ମାଗି ନାହାକକୁ ରଖି ଦିଅ ।

ରଘୁ—ହଉ ହେଲା ।

ଧନମାଳୀ—ସମସ୍ତେ ସାବଧାନ । ଯେପରି ତାଙ୍କ ହାତରେ ଧରା ପଡ଼ିବ ନାହିଁ । ତାହାହେଲେ ସର୍ବନାଶ ।

ରଘୁ—ଆଜି ବିଦ୍ରୋହ ମେଳ କରିବା ପ୍ରଶ୍ନ । ମୁଁ କହୁଛି ଆମେ କାମ କରି ଚାଲିଲେ, ବଳେ ବଳେ ବିଦ୍ରୋହ ହୋଇଯିବ ।

ଧନମାଳୀ—ଆମର ତ ଅହିଂସା ହେଲା ବ୍ରତ । ଆମେ ହିଂସାତ୍ମକ ଆନ୍ଦୋଳନ କରି ସମଗ୍ର ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଠିଆ ହୋଇପାରିବା ନାହିଁ ।

ରଘୁ—ତେଣୁ ତ ମହାତ୍ମା ଅହିଂସା ଅସହଯୋଗକୁ ମନ୍ତ୍ର କରି ଧରିଛନ୍ତି ।

ସିଂଧୁ—ବିଦ୍ରୋହ ଦରକାର, ତେବେ ଆଗ ସଂଗଠନ କାମ ଚାଲୁ ।

ଧନମାଳୀ—କିନ୍ତୁ ମୁଁ ସାବଧାନ କରି ଦେଉଛି—ପୋଲିସ ହାକିମଠାରୁ ସମସ୍ତେ ଦୂରରେ ରହିବ । ତାହା ନ ହେଲେ ମୂର୍ଖ ଲୋକେ ନେତୃତ୍ୱ ଅଭାବରେ କେତେବେଳେ କଣ କରିପାରନ୍ତି ।

ରଘୁ—ନା ନା, ତାତ ପ୍ରକୃତ କର୍ମୀର ଚିହ୍ନ ।

ଧନମାଳୀ—ଆଜି ଯେଉଁମାନେ ପ୍ରଜାମଣ୍ଡଳରେ ଶପଥ ନେବାକୁ ଆସିଛନ୍ତି ସେମାନଙ୍କୁ ଶପଥ ଦିଅ ।

ରଘୁ—କମଳା ସେ ଭାର ଗ୍ରହଣ କରିଛି ।

ଧନମାଳୀ—କାଗଜପତ୍ର ସବୁ ସାବଧାନରେ ରଖିବ ।

ରଘୁ—ହେଉ, ଆଜି ଏତିକିରେ ସଭା ଥାଉ । ବର୍ତ୍ତମାନ କେତେଜଣ ଆସୁଛନ୍ତି । ତାଙ୍କୁ ସବୁ ଶପଥ ଦିଅ ।

ଧନମାଳୀ—କିଏ ଆପର କର୍ମୀ, ପ୍ରଜାମଣ୍ଡଳ ପାଇଁ କାମ କରିବେ । ଏହାପରି ଲୋକଙ୍କୁ ଦେଖାଇବ ।

ରଘୁ—କମଳା ଆଜି କେତେ ଜଣ ଶପଥ ନେଉଛନ୍ତି ?

(ପ୍ରାୟ ଦୁଇ ଚାରିଜଣ ଲୋକ ଭିତରକୁ ଜଣ ଜଣ କରି ରଘୁବାବୁଙ୍କ ନିର୍ଦ୍ଦେଶରେ ଆସିବା)

କମଳା—ଏହି ଦେଖୁଛନ୍ତି (ମହାତ୍ମାଙ୍କ ଫଟୋ ପ୍ରତି ତ୍ରିରଙ୍ଗା ପତାକା ପ୍ରତି) ଶୁଦ୍ଧପୂତ ପ୍ରାଣରେ ଶପଥ କରନ୍ତୁ । ପଢ଼ନ୍ତୁ—କାୟ ମନୋବାକ୍ୟରେ ମୁଁ ପ୍ରଜାମଣ୍ଡଳର କର୍ତ୍ତବ୍ୟ କରିବି ।

(ଏହିପରି ଦୁଇ ଚାରିଜଣ ଶପଥ ନେଲେ)

ଧନମାଳୀ—ରଘୁ, ବର୍ତ୍ତମାନ କପିଳପାଣ୍ଡର ଅବସ୍ଥା କଣ ?

ରଘୁ—ଆଜ୍ଞା, ତା କଥା କହନ୍ତୁ ନାହିଁ । ସେତ ସବୁ କଥାରେ ରିପୋର୍ଟ ଡାଲିକା, ରସଟିକ୍, କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ କଥା କହୁଛି ।

ଧନମାଳୀ—ସେଇମିତ ଦଳ୍ଗଲତ ଆମ ଆନ୍ଦୋଳନରେ ପିଠିରେ ଛୁରୀ ମାରୁଛନ୍ତି···

ରଘୁ—ସ୍ୱାଧୀନତା ଆନ୍ଦୋଳନର ପଥ କଣ୍ଟକାକୀର୍ଣ୍ଣ । ତାହା ନ ହେଲେ ସ୍ୱାଧୀନତା ଏତେ ଦୁର୍ଲ୍ଲଭ ହୋଇ ନ ଥାନ୍ତା ।

ଧନମାଳୀ—ହଉ, ତୁମେମାନେ ସବୁ ଜାଣ । ଆମ ଉପରେ ରାଜ୍ୟରେ ସମସ୍ତଙ୍କର ଦୃଷ୍ଟି; କୋପଦୃଷ୍ଟି ।

ରଘୁ—ନାହିଁ ଆଜ୍ଞା, ସେବା ଦେଶ କାମର ଶେଷ ସାର୍ଥକତା ଅଛି । ସବୁ କୋପଦୃଷ୍ଟି ଅପେ, ଅପେ···

ଧନମାଳୀ—ସେହି କପିଳପାଣ୍ଡ, ଫଗୁ ମହାନ୍ତି ଆସି ଢକ୍କା ଛାଡ଼ିବେ ।

ରଘୁ—ହଉ, ଆଜ୍ଞା, ବର୍ତ୍ତମାନ ପ୍ରାର୍ଥନା କରାଯାଉ...

କମଳା ଦେବୀ···ପ୍ରାର୍ଥନା···

( ସମସ୍ତଙ୍କର ମାରବରେ ପ୍ରାର୍ଥନା )

( ଏତକବେଳେ ପଟ୍ଟପତନ )

---

## ତୃତୀୟ ଅଙ୍କ

### —ତୃତୀୟ ଦୃଶ୍ୟ—

(ରଣପୁର ଦୁର୍ଗର ରାଜାଙ୍କ ଉଆସ—ବରାଟ କାରଖାନା—ହାରମୋନିୟମ ତାବଲାଠାରୁ ଆରମ୍ଭ କରି, ସଖୀପିଲା ଦୁଇଟି ଠିଆ, ଟେବୁଲ ଫୁଲରେ ସଜା—ଦେଓ୍ୱାନ, ମିସ୍ କାରବା, ବଳବନ୍ତରାୟ, ମରହଟ ବେଶରେ କପିଳ ପାଣ୍ଡ । ସିନ୍ ଉଠିଲା, ସିନ୍ ଉଠିବା ସଙ୍ଗେ ସଙ୍ଗେ ଭିତରକୁ ପଶି ଆସୁଛନ୍ତି ଆଗେ

ଅଗେ ମେଜର ବେଜଲ୍ ଗେଟ୍, ତାଙ୍କ ପଛେ ପଛେ ବୃଦ୍ଧ ରାଜା । ବେଜଲ୍ ଗେଟ୍‌ଙ୍କ ଡ୍ରେସ—ଇଂଲିଶ କାଇଦାରେ—ସମସ୍ତେ ଠିଆ ହେଲେ, ଯଥୋଚିତ ସମ୍ମାନ ପ୍ରଦର୍ଶନ କଲେ—ରାଜା ପ୍ରଥମେ ଜଣ ଜଣ କରି ପରିଚୟ କରାଇ ଦେଲେ )

ବୃଦ୍ଧରାଜା—She is your honour miss କରବୀ

ବେଜଲଗେଟ୍—Oh, I see, I see (ହାତ ବଢ଼ାଇ ଦେବା)

କରବୀ—Your honour—(ନମସ୍କାର କରିବା)

ବୃଦ୍ଧରାଜା—ଏ ହେଉଛନ୍ତି ବଳବନ୍ତରାୟ my personal Secretary.

ବେଜଲଗେଟ୍—ବଳବନ୍ତରାୟ—(Shake hand କରିବା)

ବଳବନ୍ତରାୟ—Your honour, ଶ୍ରୀଙ୍ଗ୍ରୀ, ହଜୁର—

(ସେହିପରି ଦେଓ୍ୟାନଙ୍କ ସହିତ, shake hand) ରାଜା ଅଉ କାହାକୁ ସ୍ୱତନ୍ତ୍ର ଭାବରେ ପରିଚୟ କରାଇ ଦେଲେ ନାହିଁ)

ରାଜା—Your honour, chair please. (ସ୍ୱର୍ଣ୍ଣ ଖଚିତ ଚେୟାର ଦେଖାଇଦେବ) ବେଜଲଗେଟ୍ ବସିବା, ରାଜା ବସିଲେ—ମିସ୍ କରବୀ ଚର୍ଚ୍ଚାରେ ଲାଗିଗଲେ ।

ମିସ୍ କରବୀ—ଅଗ ସୁନାହାର ଗୃହେ ଅଣି ସାହେବଙ୍କୁ ଦେଇ your honour !

ବେଜଲଗେଟ୍—Oh I see...I am very glad to meet you କରବୀ—very glad.

କରବୀ—Your honour.

ବେଜଲଗେଟ୍—(କୋଣ ହସ୍ତରେ ଠିଆ ହୋଇଥିବା କପିଳ ପାତ୍ର ପ୍ରତି) who is that

କରବୀ—Your honour, your loyal subject!

ବେଜଲଗେଟ୍—Oh I see...

ମିସ୍ କରବୀ—(ମଦପାତ୍ର ସାହେବଙ୍କୁ ଦେବା, ସାହେବ ମଦ ପିଇବାରୁ ...ବୃଦ୍ଧ ରାଜା ଅଖି ଠାରିଦେଲେ; ସେଗେ ସଙ୍ଗେ ସଙ୍ଗୀତ ଅରମ୍ଭ ହେଲା—)

ବେଜଲଗେଟ୍—Raja Saheb no trouble in the state ?

ରାଜା—Your honour, no trouble.

ବେଜଲଗେଟ୍—Who is the police officer.

( ସଙ୍ଗୀତ ବନ୍ଦ ହେବା)

ବେଜଲଗେଟ୍—ଦେଓ୍ୱାନ ସାହେବ—who is your police officer.

ଦେଓ୍ୱାନ—Your honour. Here is the police officer.

ବେଜଲଗେଟ୍—ସବୁ ଶାନ୍ତ ହେ, କାହିଁକି ଗୋଳମାଳ ହେ ?

ଦାରୋଗା—Your honour no trouble.

ବେଜଲଗେଟ୍—ତେଙ୍କାନାଳରେ ଗୋଳମାଳ ହୁଅ, ସବୁ ଦମନ କରିଦିଅ, ଯେ ଲୋକ ନେତା ହେ, ଇସକୁ arrest କରେ।

ଦାରୋଗା—Your mercy.

ବେଜଲଗେଟ୍—ପ୍ରଜାମଣ୍ଡଳ ନେତା ସବ୍‌କୋ ଖତମ କର। Discipline and loyality କାସ୍ କରନେ ହୋଗା (ମଦପାନ ପରେ ରାଜା ସାହେବଙ୍କ ସଙ୍ଗେ ପଦେ କଥାବାର୍ତ୍ତା କରି) ମିସ୍ କରବୀ—I am so glad to meet you···

କରବୀ—Your honour (ଏତିକିବେଳେ କେତେଗୁଡ଼ିଏ କାଗଜପତ୍ର ବଢ଼ାଇ ଦେବା )

ବେଜଲଗେଟ୍—(ସଙ୍ଗେ ସଙ୍ଗେ ଦସ୍ତଖତ କରି) I am so glad to meet you ଉଠିବା।

ମିସ୍ କରବୀ—Your honour—

ବେଜଲଗେଟ୍—I am so glad to meet you...I am so glad to meet you···(ରାଜାଙ୍କ ପ୍ରତି) ରାଜା ସାହେବ, why do not send Karabi to Dak Bunglow···

ରାଜା—Your honour···

ବେଜଲଗେଟ୍—I am so glad to meet you Karbi...

କରଣ୍ଡୀ—Your honour···

ବେଜାଲଗେଟ୍—Good night ଠାଣିରେ, ମିସ୍ କରବୀକୁ ଗୃହିଁ ଗୃହିଁ ଫେରିଯିବା, ପଛେ ପଛେ ରାଜା ଦେଓ୍ୱାନ ଗଲେ ।

—ସିନ ପଡ଼ିଲା—

# ତୃତୀୟ ଅଙ୍କ

## —ଚତୁର୍ଥ ଦୃଶ୍ୟ—

(ଗାଁ ଆଖଡ଼ା ଘର ଶାଳ ବସି ମର୍ଦ୍ଦଳ ବଜାଉଛି—ବାମା, ସହଦେବ, ଆଉ ଦୁଇଜଣ ପାଲି ଧରି ଗୀତ ବୋଲୁଛନ୍ତି)

ଖାଲି ମିଛ ଭବ ରାଜା ରାଇଜ ଲୋ
ଖାଲି ଅଙ୍କ ଖେଳ ଘର
ବେଠି ଦେଇ ଦେଇ ମାଡ଼ ଖାଇ ଖାଇ
ଜେଲ ହୋଇଲଣି ମାମୁଁଘର···ଲୋ
ଖାଲି ମିଛ ସଂସାର ।
କାଆଁ ଗଲା କେତେ ମିଛ ମୂର୍ତ୍ତିଙ୍କର
କାଛ କାଡ ନାଠକୂଟ
ରାଜା ରାଜଡ଼ାର କଲା ଇତିହାସ
କାଏ, କାହିଁ ବସି ଘାଣ୍ଟି···ଲୋ
ସବୁ ଦେଖିଲଣି ସାର

(ଏହି ସମୟରେ କପିଳ ପାଏ ଆସି ପହଞ୍ଚିବା—ଚନ୍ଦନ, ଫୁଲ ବେଶ ହୋଇଛି—ତାଙ୍କୁ ଦେଖି ଆଖଡ଼ା ବନ୍ଦ ହୋଇଗଲା—)

କପିଳ ପାଏ—କିରେ, ତମେ ସାହେବକୁ ଦେଖିଲନି—ସାହେବ କହୁଛି ରସଟିକି ନାଟିଯିବ ଯେ—ଯେଉଁମାନେ ଭେଟି ଦେଇନ, ବୋପାକୁ ପୁଅ କହି ଯାଇ ଦେଇ ଦିଅ । ନଇଲେ ରସଟିକି ନାଗିଯିବ···

(ବିପରୀତ ଦିଗରୁ ରଘୁନାଥ, ବସନ୍ତ ଏବଂ କମଳା ଦେବୀଙ୍କର ପ୍ରବେଶ, ହାତରେ ଖଣ୍ଡେ ଖଣ୍ଡେ ଖଦଡ ବ୍ୟାଗ)

ସମସ୍ତେ ଉଠି ତାଙ୍କୁ ନମସ୍କାର କଲେ ।

ବସନ୍ତ—କପିଳ ପାତ୍ରେ ଏଇଠି ତ…

କପିଳ ପାତ୍ର—(ଭ୍ରୂ କୁଞ୍ଚାଇ) ତମ ନାମରେ ଏଣିକି ରସଟିକି ଲାଗିବ । ତମେ ଗାଁଟାକୁ ଉଚ୍ଛନ୍ନ କରିଦେଲ ।

ବସନ୍ତ—କଣ କହୁଛ ? କୃଷ୍ଣଚନ୍ଦ୍ର, ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ…

କପିଳ—ହଁ, କୃଷ୍ଣଚନ୍ଦ୍ର ନରେନ୍ଦ୍ର ମାହାପାତ୍ରଙ୍କ ରାଜ୍ୟରେ, ଫଗୁ ମହାନ୍ତି, ଦେଓ୍ୱାନଙ୍କ ଅମଳରେ…ତମେ ଦଳେ ବସିଛ ଆମକୁ ରସାତଳେ ପକାଇବ । ଆମ ପୂର୍ବପୁରୁଷମାନ ନେବ । ତମଠି ରସଟିକି ଲାଗିବ ନାହିଁତ ଆଉ କାହାଠି ଲାଗିବ ।

ବସନ୍ତ—ତମ ପୁଅ କାହାନ୍ତି ହେ ?

କପିଳ—କଣ ବହୁତ କଥା ପଚାରୁଛ । ଆମ ସହିତ ତମର କି ସମ୍ପର୍କ, ଆମର ସ୍ୱତନ୍ତ୍ର ଲାଇନ୍…

ବସନ୍ତ—ହଁ ତମ ଲାଇନଟା ବଡ଼ ସ୍ୱତନ୍ତ୍ର—ରେଲ ଲାଇନ ପରି—ନାନା କଲିକତା ଟ୍ରାମ ଲାଇନ ପରି । ନା ନା ଆମ ଗାଁ ଗୋହିରି ଶଗଡ଼ ଗୁଳାପରି ।

କପିଳ—ଆରେ କାଲିକା ବଛା—ଆମେ ନରେନ୍ଦ୍ର ମହାପାତ୍ରଙ୍କ ଅନ୍ନ ପାଣିରେ ପ୍ରତିପାଳିତ—ତମେ ସବୁ ନିମକହାରାମ—

ବସନ୍ତ—ପାତ୍ରେ ତାଳିକା ବହି ଅଛିଟି ?

କପିଳ—କଣ କହିଲୁ ?

ବସନ୍ତ—ତମ ତାଲିକା ଖାତା କାହିଁ ?

କପିଳ—କରେ ତୋର ବଡ଼ ସାହସ ତ ?

ବସନ୍ତ—ଏ ଲୋକଗୁଡ଼ାଙ୍କୁ ମୋର ବତାଇ ଶିଖାଇ ତମେ ବଡ଼ ଅରାଜ୍ୟ କରିଛ । କେନ୍ଦୁଆଁ କାହିଁ ? କେନ୍ଦୁଆଁ……

ରଘୁ—ପାତ୍ରେ ଆଖଡ଼ାଘରେ ବସ—ଗାଁ ଆଖଡ଼ା ଘର—

ପାଣ୍ଡେ—କଣ ତମ ସାଥିରେ ପାଙ୍କ ହେବ—ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ...ରାଜ୍ୟ ପାର ହେବ...

ରଘୁ—ସେଇ କଥା ପାଣ୍ଡେ—ଆମ ଆଗରେ ଖାଲି ଦ୍ୱୀପାନ୍ତର...ଜଙ୍ଗଲ ପାର, ଜେଲ, କୋରମାନା ତମ ଆଗରେ ଖାଲି ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟ—ଫଗୁ ମହାନ୍ତିଙ୍କ କାର୍ଯ୍ୟ, ଦାରୋଗାଙ୍କ ଲାଂଚ—

ପାଣ୍ଡେ—(କାନରେ ହାତ ଦେଇ) ଅରେ ରଘୁଆ, ତୁ ଭିର ଏବେ ନେତା ବନାଇ ଗଲୁଣି—କଂଗ୍ରେସ ଟୋପି ଖଣ୍ଡେ ପିନ୍ଧି ଦେଇ ତାମସା ଲଗିଛୁ । ଏ ଅଖଡ଼ା ଘରକୁ କାହିଁକି ଆସିଛ ।

ରଘୁ—ତମେ ଯେଉଁମାନେ ଆସିଛ ?

ବରାଡ଼େ—ତମକୁ ଗୁନ୍ଦା ମାଗି ଆସିଚୁ ।

କପିଳ—ବରାଡ ପୁଅ, କପିଳ ପାଣ୍ଡ ଆଗରେ ସେ ସବୁ ପଇଟିବ ନାହିଁ । ଦେଲୁ ଦେଲୁ କଣ ଅଛି ତୋ ଖଦଡ଼ ମୁଣିରେ ।

ବରାଡେ—ରଣପୁରଠାକୁ ଖାଇଛ, ତମକୁ ଅମେ ପୁଣି ଦେବୁ ।

କପିଳ—ଅରେ ଅରେ ତମମାନ ପତାକା ଖଣ୍ଡେ ଧରି ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ ପାଙ୍କ କରୁଛ । ଅହିଂସା କହି କହି ହିଂସା କରୁଛ । ତମେ ସବୁ କହିବ ଗୋଟେ କଥା, କରିବ ଆଉ ଗୋଟାଏ କଥା । ତମେ ଗୋଟେ ଚିତାଙ୍କଠା ଦଳ...

ବରାଡ଼େ—ପାଣ୍ଡେ, ଦେଖି ତମ ପକେଟରେ କଣ ଅଛି—

(ପକେଟ ଦେଖାଇବା)

କପିଳପାଣ୍ଡ—(ଦୂରକୁ ଘୁଞ୍ଚିଯାଇ) ଏଁ ଏଁ ସାବଧାନ ।

ରଘୁ—ପାଣ୍ଡେ ! ତମେ ଯାହା କହିଲ ଆମର କଥାରେ ତମେ ଭେଦ ଦେଖୁଛ ? ସେଇଠା କାହା ଦୋଷ ଜାଣିଛ ?

ଅନନ୍ତ ବରାଳ—ସେଇଠା ତାଙ୍କ ଚଷମାର ଦୋଷ...

କପିଳ – ପୁଣି କଣ କହିଲ...

ରଘୁ—ଯେଉଁଠାରେ ଏକ ଦଗରେ ସେବା ତ୍ୟାଗର ଅସରନ୍ତି ନିଝରିଣୀ ବହୁଥାଏ, ଅନ୍ୟ ଦଗରେ ଦଲାଲ ମଣିଷମାନଙ୍କର

ବିଶ୍ୱାସଘାତକତା ଭିତରେ ଭିତରେ ସୁନାର ଗଡ଼ା ଘରକୁ ଝିକମିକି କରୁଥାଏ । ସେଠି ତମପରି ଲୋକର ବୁଝିବା ଶକ୍ତି କେତେ ଅଛି...

ବସନ୍ତ—ତମେ କାହିଁକି ଏ ଆଖଡ଼ା ଘରକୁ ଆସିଛ ଯେ ।

ମାଳ—ନାହିଁ ନାହିଁ, ସରବସ୍ତିବାରେ ଟିକିଏ ନାଚ ଶିଖିବାକୁ ଆସନ୍ତି...

କପିଳ—କଣ କହିଲୁ ମାଳ...ମାଳ...ଦୋଷ ଉପରେ ନାଳତା ବଢ଼ା କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ ଭେଟି ଦେଇଲୁ । ବାମା ଘୋଡ଼ାକୁ ଛୁ ବଢେଇଛୁ । ପିଠିରେ କର୍ଣ୍ଣିବ ଖୋଲପା ବାନ୍ଧ ।

ରଘୁ—ପାତ୍ରେ, ତମେ ତମ କାମରେ ଯାଅ ।

କପିଳ—ତମେ ତମର କାମରେ ଯାଅ ।

ରଘୁ—ଆମର କାମ ଏମାନଙ୍କ ସଙ୍ଗରେ ।

କପିଳ—ମୋରତ ଠିକ ସେଇୟା କାମ ।

ରଘୁ—ତମେ ତମର କାମ ଚଞ୍ଚଳ ସାରି ଯାଅ...

କପିଳ—ମୋର ଇଚ୍ଛା ମୁଁ ମିବନ...

ରଘୁ—ଆଉ କଣ ଗୀତ ଶୁଣିବଟି...

ବସନ୍ତ—ମାଳ, ଗୀତ ଖଣ୍ଡେ ବୋଲିବଟି...

(ସଙ୍ଗେ ସଙ୍ଗେ ଗୀତ ସହିତ ମର୍ଦ୍ଦଳ ବାଜିଲା)

ନାଆଁ ଗଲା କେତେ ମିଛ ମୂର୍ତ୍ତିଙ୍କର
ନାଛ ଧନ ନଠ କୂଠ...

କପିଳ—କରେ ମୋ ଗାଁ ଆଖେଡା ଘରେ ଏ ଗୀତ କଣ

ବସନ୍ତ—ଏ ଗୀତ ପରା ତମର ବନ୍ଦନା...

କପିଳ—ଚୁପ କର । କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କର ନିମକହାରାମ...

ରଘୁ—ଆପଣ ସେମିତି କାହିଁକି ?

କପିଳ—ମାଳ, ବାମା, ସହଦେବ, ତମେ ସବୁ ଏଗୁଡ଼ାକଙ୍କ ସାଥିରେ ମାତିଛ ? ଖଣ୍ଡିଆ ହଡ଼ାଙ୍କ ସାଥିରେ...

ରଘୁ—କରେଇ ତାତଲେ ସିନା ଘିଅ ଓ ପାଣି ଜଣା ପଡ଼େ...

କପିଳ—କଣ କହିଲୁ···ଢିଅ ଓ ପାଣି । ଅରେ ଗୀଳ···ଅରେ ବାମା···
ଅରେ ସହଦେବ···ତମରମାନଙ୍କ ପାଇଁ ସିନା ମୁଁ ଲାଗିଛି ।
କେଉଁ ଦିନଠୁଁ ଗୋଟା ହାକମ ରଣପୁରକୁ ସାଧ କରି
ପାରନ୍ତାଣି ।

ରଘୁ—ଆପଣ ଗଲେ ଏଠୁଁ...

କପିଳ—ଗୀଳ, ବାମା, ଶୁଣ, ଶୁଣରେ । ଏଗୁଡ଼ାକ-ନିଆଁ ଗିଳାରେ ।

ବସିତେ—ପାଦେ ! ମିବ ନା ନାହିଁ । ଅଜି ପୂନିଅଁ ନୁହେଁଟି...ସପ୍ତମୀ
ତିଥି···ଉତ୍ତମ ବ୍ୟବସ୍ଥା ହୋଇମିବ ।

କପିଳ—କରେ ବାମ···

ବାମ—କଣ କହୁନ୍ତ ସରବସିକାରେ···

କପିଳ—କରେ ହଂସା ଗାତରେ ତୁମେ ପଡ଼ି ଯାଉଛ । ଗାଁଟା ଉଚ୍ଛନ୍ନ
ହୋଇ ମିବରେ । ପିଲା କବାଲା କୁଅଡେ ମିବେରେ । ଏହି
ଗାଁରେ କେତେ ପୁରୁଷଥିଲେ, କେତେ ରଥୀଥିଲେ, ହୁଦରେଥି
ଥିଲେ, ଗଦା ସାହୁଥିଲା, ଲଙ୍ଗା ମ୍ୟାଳି, ଦାମ ପଲଟା ସିଂହ-
ଥିଲେ । କେହି ହେଲେ ସଜାଙ୍କୁ ଭଗେସି କରି ଗୃହି ନ ଥିଲେ !
ତମେ ସଜ ଭକ୍ତ ପ୍ରଜା ଗୁଡ଼ାକ କାହିଁକି ଏମିତ ହେଉଛ ?

ରଘୁ—ପାଦେ, ଲିଭଲା ଦାପରେ ତେଲ ଦେଇ କେବେ କିଛି ଲାଭ
ହୋଇଛି । (ହୁଁ) ସଜ ଭକ୍ତ । ଅଜି ଗୋଟାଏ ଅଦମ ବଣ
ପାହାଡ଼ର ବର୍ଦ୍ଦର କଥା, କାହାକୁ ଭକ୍ତି କରିବ ? କାହାକୁ
ଶ୍ରଦ୍ଧା କରବ । ସଜା କାହାନ୍ତି ?

କପିଳ—ଏହି କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କୁ । ତାଙ୍କ ଦେଓ୍ୱାନ
ଦାସେଗାଲୁ ।

ରଘୁ—ବୁଝିଲ, କମଳଯାକ ବାଲା । କୋଟି କୋଟି ପ୍ରଜାଙ୍କ ଲହୁଲହରେ
ତୁନେ ସିମିଟି ବନ୍ଧା ହୋଇଥିବା ଏହି ଉଆସ ଘରର ସଜା···ଛି
ପାଦେ···

ବସିତ—ପାଦଙ୍କର ଟିକଏ "ମୋଦକ ଭ୍ରମ" ହୋଇଛି ।

କପିଳ—ଅରେ, ତମ ପ୍ରଜାମଣ୍ଡଳଆ ଦଳ ବୋଲି ଖବୁଛକି ?

ରଘୁ—ତାହା ହେଲେତ ଭଲ ହୋଇ ଥାଆନ୍ତା···

କପିଳ—ଏଁ ...କୃଷ୍ଣଚନ୍ଦ୍ର ନରେନ୍ଦ୍ର, ମହାପାତ୍ରଙ୍କ ଅନ୍ନ ପାଣିରେ··· ବେର୍ଜ୍ୟାନ ଦାରୋଗାଙ୍କ ଅନ୍ନ ପାଣିରେ···

ରଘୁ—ତାହା ନୁହେଁ, ନରେନ୍ଦ୍ର, ମହାପାତ୍ରଙ୍କ ଘୋଡ଼ା କୋରଡ଼ାରେ ବେର୍ଜ୍ୟାନ ଦାରୋଗାଙ୍କ ଗୃହୁକରେ ..ଏଇ ଯେ ଗ୍ରଜା ଘର ହାତୀ ଶାଳ ଠିଆ ହୋଇଛି...

କପିଳ—ଚୁପ୍ କର । ତମେ ଗୁଡ଼ାକ ଧୁଷୁରୁ, ପିମ୍ପୁଡ଼ି ।

ରଘୁ—ହଁ ସେହି ପିମ୍ପୁଡ଼ି ଦଳେ ତମର ଗୁଡ଼ଘର, ସରଘର, ଗନ୍ତାଘରେ ପଶି ସବୁ ମାଟି ଫଟେଇ ଦେବେ ।

ବଗ୍ରଡ଼—ସାହେ, ନାଲି ପିମ୍ପୁଡ଼ି ହେଲେ ଆହୁରି ଭଯ୍ୟ···ତମେ ଏଠୁଁ ଗଲ ।

କପିଳ—କାରେ ଦାମା, ଜାନ୍ତୁ···ଏ ଆଖଡ଼ା ଘର ବନ୍ଦ କର ।

ଜାଲ—ଗୃହ ନେଇ ଯାଇଛି ଘନ ସାହୁ ।

କପିଳ—ସବୁ ପଢ଼ ଥାଉ, ତମେ ଗୃହଲଆସ । କରେ ଦାମା, ନରେ ଜାନ୍ତୁ କାରେ ସହଦେବ...

ଜାନ୍ତୁ—ଏଠି ପଗ୍ର ଗାଁ । କଥା ପଡ଼ିବ ।

ପାହେ—ଥାଉ କାଲି ପଡ଼ିବ···ଏଗୁଡ଼ାକ ଯାଆନ୍ତୁ ।

ବଗ୍ରଡ଼—ଥରେ କହିଲ ଅଜ ସପ୍ତମୀ ତିଥି···

ପାହ—ଚୁପ୍ କର···ବେକନୁଆ, ଏ ବେକନୁଆ (ଡାକିବା) ଏଇଟା ବ ଅଜ କୁଆଡ଼େ ଗଲା । ଅଜ ଦେଉଛି ରିପୋର୍ଟ କରି···

ବଗ୍ରଡ଼—ଛିନ୍ନ ରିପୋର୍ଟର ଖଣ୍ଡେ ଛିଣ୍ଡା କାଗଜ, ତାଙ୍କ ଜୀବନଟା···

କପିଳ—ମୁଁ ଯାଏ । ଦାରୋଗା ବାବୁଙ୍କୁ ଖବର···ଦେଲେ···

ବଗ୍ରଡ଼—ଦାରୋଗା ବାବୁଙ୍କୁ କହିବ କଛ ଖାଇବାକୁ ଆଣିଥିବେ···

କପିଳ—ରହରହ ତମର ଅଟା ତାମସା ସବୁ

ବଗ୍ରଡ଼—କଣ ହେବ । ଯେ ସିନା ଡରେ, ସେ ସିନା ମରେ

ରଘୁ—ଆମରତ ଜୀବନ ପାଣିଛଡ଼ା ହୋଇଛି···

କପିଳ—ମୁଁ ଦେଖୁଛି ।··· ( ଏବେକନୁଆ ବୋଲି ଡାକି ଡାକି ବାହାରକୁ ଯିବା )

ରଘୁ—ଲାଲ, କଣ ଗୃନ୍ଦା କିଛି ପାଇଲ ?

ଦାମ'ସ୍ଲେଠା—ଆଜ୍ଞା ଆପଣ ନ ଥିଲେ ବଡ଼ ଅଧୈର୍ଯ୍ୟ ଲାଗୁଛି । ଏହି କପିଳ ପାନ୍ଦ ଆମକୁ ଧମକ ଦେଉଛି...

ରଘୁ—ତମର କାହାର କିଛି ହେବନି । ତମେ ସବୁ ବାହାରେ ଧରା ନ ପଡ଼ି ଭିତରେ ରହି କାମକର । ସମସ୍ତେ କଣ ଜେଲ ଯିବେକି ?

ସହଦେବ—ଠିକ କଥା । ଠିକ କଥା, ଆମେ ଆମ ଗାଁଠାକୁ ଠିକ୍ ରଖିବୁ । ସମସ୍ତଙ୍କୁ ଏକଜୁଟ କରି ଦେବୁ ।

ବାମ—ସରକାରଙ୍କର ନିମିତ୍ତ ହେଉଛି...

ଲାଲ—ତତେ ଖାଇ ପକାଉଛି...

ବଗଡ଼—ସେ କଣ କରିବମ ସେତ ଜଣେ ସେଇ ଦଲାଲ ଶ୍ରେଣୀର । ହଁ କଣ ଆଖଡ଼ାରେ ଗୀତ ଗୃଲିଛି ନା କଣ ।

ଦାମା—ହଁ, ହଁ ଛନ୍ଦକୁ ପଦେ ବୋଲିବ ?

ରଘୁ—ଗୀତ ବୋଲିବ ଯେ···ପ୍ରଜାମଣ୍ଡଳର ସଭ୍ୟ ସଂଗ୍ରହ କାମ ଗୃଲିଛିତ ?

ଲାଲ—ଆମେ ଏ ଯାଏ ଅଠବସ୍ତା ଗୃଉଳ, ତେର ଟଙ୍କା ଅଠଣା ଆଦାୟ କରି ରଖିଛୁ । ଗାଁରୁ ସମସ୍ତେ ମେମ୍ବର ହେଲେଣି । କହୁଛନ୍ତି ରଘୁବାବୁ ସଭା କରନ୍ତୁ ।

ରଘୁ—ହଉ, ଆମେ ପରେ ଆସିବୁ । ଏଇଲାଗେ, ପରା ଦେଓ୍ୟାନ ଦାରୋଗା ଆମ ପଛରେ ଲାଗିଛନ୍ତି ।

ଲାଲ—ବାବୁ ଟିକିଏ ବିଶ୍ରାମ ନିଅନ୍ତୁ···

ସହଦେବ—ଅରେ ଦେଖମ, ବାହାରେ ସେ ପାନ୍ଦ କଣ କରୁଥିବ ! ନାଲି ପଗଡ଼ିଆଙ୍କୁ ଡ଼ାକି ଆଣିବଟି···

ଦାମା—(ଛୋଟେଇ ଛୋଟେଇ ଯିବା···ଦେଖି ଆସିବା)

ରଘୁ—ଏହି ନିଅ କାଗଜ ପନ୍ଦ । ସବୁ ସାବଧାନରେ ରଖ । (ସଭ୍ୟ ସଂଗ୍ରହ ଖାତା)

ସହଦେବ—(ସବୁ କାଗଜପନ୍ଦ ରଖିବା)

(ରଘୁ ଏବଂ ବଗଡ଼ ପ୍ରଭୃତି ଗୃଲି ଯାଉଥିଲେ କାନୁ ଲାଲ ଡାକିଲା)

ଗୀଲ—ଭାଇ ଟିକଏ ବସିଯାମ,..ସିବତ ଧାଇଁ ଧାଇଁ ଆସିଛ···

(ଏହା କହି ଗୀଲ ଛାନ୍ଦରୁ ପଦେ ବୋଲିଲା ବାଦ୍ୟଯନ୍ତ୍ର ସାହାଯ୍ୟରେ)

ଗୀତୁ—"କୃଷ୍ଣଙ୍କୁ ବେଶ କର ସୁଦାମା ମାଳୀ
ଶିରେ ଖଞ୍ଜିଲା ନେଇ କେତକୀ କଳି ଯେ"...

ଗୀତ ସରିଲା ।

ରଘୁ—ଗୀତୁ ଜାଣିଛୁ । ଏ ଛାନ୍ଦ କାହାର ରଚନା ।

ଗୀତୁ—ଉପେନ୍ଦ୍ର ଭଞ୍ଜ ।

ରଘୁ—ହାତ୍ ଏହିପରି ଆମ ରଣପୁରର ଜଣେ କବି ଲେଖିଛନ୍ତି...

ଗୀଲ—ଆମ ରଣପୁରର ? କଏ ଆଜ୍ଞା—ଆମେ ମୂର୍ଖ କଣ ଜାଣିବୁ ।

ରଘୁ—ଆରେ ହଁ ରଣପୁରର କବି ଭକ୍ତଚରଣ ଦାସ—ଆରେ ଏଇ ସୁନାଖଳାରେ ଯେଉଁ ଭକ୍ତଚରଣ ମଠ ନାହିଁ । ସେଇ ପରି ତାଙ୍କର ମଠ । ସେ ପରି ସେଇଠି ଥିଲେ । ତୁ ଏବେ ଯା ଜାଣିନୁ ।

(ଏହି ସମୟରେ ଜଣେ ଗ୍ରାମବାସୀ ଆସି ରଘୁ ଏବଂ ବରଡ଼କୁ ଦଣ୍ଡବତ ହେଲା ଏବଂ କହିଲା)

ଗ୍ରାମବାସୀ—କିରେ କପିଲା କାହିଁକି ଜଣକୁ ଗଡ଼କୁ ପଠାଇଲା ?

କମଳା—ଏଇ ଗୃଲଲୁ । କପିଲ ପାଏ ଗଡ଼କୁ ପୋଲିସକୁ ଖବର ଦେବାଲାଗି ବୋଧ ହୁଏ... (ଠିକ ସମସ୍ତେ ବାହାରି ବେଳକୁ ପୁଣି କପିଲ ପାଏ କହୁ କହୁ ଅସୁଛନ୍ତି)

କପିଲ—କିରେ ଗୀତୁ ! ଏ ଗାଁରେ କୋମ୍ପା ପଡ଼ିବ କରେ ? ସିପେହି ସୁବା ମନ୍ତ୍ରୀ ମଞ୍ଜନ କରି ଦେବେରେ...

(ରଘୁ ଆଉ କମଳା ହସିହସି ବାହାରକୁ ଗୃଲିଯିବା ବେଳେ)

ବରଡ଼େ—ଏହିତ ପାଏ ଆସିଲେଣି ।

କପିଲ—ପୁଣି ତମେ ବସିଛ ?

ବରଡ଼—ପାଏ···ତମ ଟଙ୍କାଗୁଡ଼ିକୁ ସମସ୍ତେ ଅସୁନ୍ଦର ।

(ଏତିକି ବେଳେ ସମସ୍ତେ ବାହାରକୁ ଯିବା—ବରଡ଼ ଭୁଲ କରି ବାହାରକୁ ଯାଇ ପାଏକୁ ଦୁଆରେ ବନ୍ଦ କରିଦେବା—ପାଏ ଭିତରେ ରହି)

ପାଣ୍ଡେ—ହଇରେ ମାଲ, ଦାମ, ଏନଅଁ ଗିଲା ଗୁଡ଼ାଙ୍କୁ ଧରବଟି...
ହଇରେ କରେନ୍ଦ୍ର, ମହାପାତ୍ରଙ୍କ ରାଜ୍ୟରେ—ହରେ ପୁଅ ରକ୍ଷଟିକ ନାଗିବଯେ ।

(ବାହାରୁ ହସ ଶୁଭିଲା)

---

## ୪ର୍ଥ ଅଙ୍କ

### ପ୍ରଥମ ଦୃଶ୍ୟ

(ରଣପୁର ଜେଲଖାନାର ଦୃଶ୍ୟ, ସିନ ଉଠିଲାବେଳକୁ ଧାଡ଼ି ହୋଇ ଜେଲ ଘର ଭିତରେ ବନ୍ଦୀ ହୋଇ ଠିଆ ହୋଇଛନ୍ତି ଧନମାଳୀ ରାମ, ଦବାକର ପରିଡ଼ା, ପଦନ ଦାସ, ବଂଶୀ ପଣ୍ଡା, ବରାଡ଼ ପ୍ରଭୃତି... **By turn** ସିପାହୀ କୁର୍ବାନ ଖାଁ ସେମାନଙ୍କୁ ପିଟୁଛି । ଦାରୋଗା ବାବୁ ଚୌକରେ ଜେଲ ବାହାରେ ସମାସୀନ । ସିନ ଉଠିଲା । )

ଦାରୋଗା—(ଇଙ୍ଗିତ ଦେଲେ) ଏକ ଏକ ଅମିଦ ଇହ୍ ।ସେ ଲାଓ...

କୁର୍ବାନ—ବୁଢ଼ା ଧନମାଳୀ ରାମକୁ ବାହାରେ ଠିଆ କରାଇବା—

ଦାରୋଗା—(ଠାରଦେଲେ କୁର୍ବାନ୍ ଗୁରୁକ ଚଳାଇଲା । ...)

ଦାରୋଗା—ଆପଣ 'ଦାବ ପତ୍ର' ଉଠାଇ ନିଅନ୍ତୁ । ଆଉ ଏହିପରି ହିଂସାତ୍ମକ ଷଡଯନ୍ତ୍ରରୁ ନିବୃତ୍ତ ହୁଅନ୍ତୁ ।

ଧନମାଳୀରାମ—ଦାବୀପତ୍ର ପ୍ରଜାମାନଙ୍କର । ଆଉ ହିଂସା କଂଗ୍ରେସର ଧାନ୍ଦା ନୁହେଁ । ଅହିଂସା ଆମର ଲକ୍ଷ୍ୟ (ପୁଣି ଗୃରୁକ ପରେ ଗୃରୁକ)

ଦାରୋଗା—ଆପଣମାନେ ସଭା ସମିତି କରୁଛନ୍ତି । ୧୪୪ ଧାରା ଅମାନ୍ୟ କରୁଛନ୍ତି ।

ଧନମାଳୀରାମ—ଆଇନ ଅମାନ୍ୟ କରୁନାହୁଁ । ଆମର ଦାବି ଆମେ ଘୋଷଣା କରୁଛୁ ।

(ଏହାପରେ ନଥି ସେନାପତିଙ୍କୁ ଅଣି ଦାରୋଗା ସେମିତି ପିଟାଇଲେ)

ଦାରୋଗା—କିଏ ସେନାପତି ! ତମେ ମାଡ଼ୁଅ ଲୋକଙ୍କୁ ଷଡ଼ଯନ୍ତ୍ରପାଇଁ ମତାଉଛ ?

ସେନାପତି—ଷଡ଼ଯନ୍ତ୍ର ନୁହେଁ, ଆମର ସଂଗଠନ କାମ ଚାଲିଛି । କଂଗ୍ରେସର ନିର୍ଦ୍ଦେଶ..............(ପୁଣି ଚାବୁକ) ଦିବାକରକୁ ଆଣିଲେ—

ଦାରୋଗା—ତୁ ସବୁଠୁଁ ବେଶୀ ରାଜ୍ୟରେ ଅରାଜକତା ପାଇଁ ପ୍ରଚାର ଚଳେଇଛୁ । Dam fool

ଦିବାକର—Shut up Inspector

ଦାରୋଗା—(ଉତ୍ତ୍ୟକ୍ତ ହୋଇ ଉଠି ଆସିଲେ ବୁଟ୍‌ରେ ଦିବାକରକୁ ମାଡଦେଲେ । ସେ ତଳେ ପଡ଼ିଗଲା । ପୁଣି ବୁଟ୍‌ରେ ଛାତିରେ ମାଡ...) ଶାଲା—ହାରମଜା'ଦା, Dam fool

(ଏହି ସମୟରେ ହଠାତ୍ ପୋଲିସ ସବ୍‌ଇନ୍‌ସ୍‌ପେକ୍ଟର ଏକ କନେଷ୍ଟବଲ ସହ ରଘୁନାଥଙ୍କୁ ଜଂଜିରରେ ବାନ୍ଧି ଭିଡ଼ି ଭିଡ଼ି ଆଣିଲା ବାହାରୁ—ପଛେ ପଛେ କପିଳ ପାତ୍ର)

କପିଳ ପାତ୍ର—ନନସେନ—ଶଳା, କାଲିକା ବଚ୍ଚା—ଗାଁଟାକୁ ମୋର ଭାଙ୍ଗିଦେଲାଣି—(S.I. ଯଥାବିଧି ସମ୍ମାନଦେଲେ ଦାରୋଗାକୁ)

ଦାରୋଗା—ଏ ଆସାମୀ କେଉଁଠି ଧରା ହେଲା ।

S.I.—ଆଜ୍ଞା, ନାଖପଡ଼ା ବାଡ଼ିପଟେ ଚାଲି ଯାଉଥିଲା ।

ଦାରୋଗା—(ଠାରିଦେଲେ, କୃପାନ କନେଷ୍ଟବଲ ମିଶି ପ୍ରହାର କଲେ)

ଦିବାକର—(ଅନ୍ତରରୁ) ସଇତାନ ..(ପାଟିକଲା)...

ଦାରୋଗା—(କଡ଼ ମଡ ଆଖିରେ ତା ଆଡକୁ ଚାହିଁଲେ ..ନିଜେ କୋରଡା ଧରି ଆରମ୍ଭ କଲେ ପ୍ରହାର—) ରଜା ବିରୁଦ୍ଧରେ ଷଡ଼ଯନ୍ତ୍ର ଅପରାଧ—ବୁଝିଲୁ ରଘୁ ଡକାଏତ...

ରଘୁନାଥ—(ଲହୁ ଝରି ପଡୁଥାଏ—ନୀରବ)

ଦାରୋଗା—କୃପାନ ଖାଁ—ଶକ୍ତ ପ୍ରହାର—Break their heads ରାଜ୍ୟର ରଜାଙ୍କ ବିରୁଦ୍ଧରେ ଷଡଯନ୍ତ୍ର—ସଭା ସମିତିରେ ପ୍ରଚାର ଦାବିପତ୍ର—ନାମରେ ହିଂସାର ଧମକ । ଚୋରି, ଡକାୟତି, ପ୍ରବଞ୍ଚନା—ସବୁକିଛି ଦୋଷରେ ଅଭିଯୁକ୍ତ । ସଇତାନ

ରଘୁ—ଖାଇବ ।
ଦାରୋଗା—ତୁମମାନଙ୍କୁ ଆଜି କହିବାକୁ ପଡ଼ିବ । ଏ ସବୁ ଆନ୍ଦୋଳନର ମୂଳରେ କିଏ ? କୁର୍ବାନ ଖାଁ, କ୍ଲାନ୍ତହେଲେ, ଅନ୍ୟ ସର୍ଦ୍ଦାରକୁ ଡକାଅ—(କୁର୍ବାନ ଖାଁ, ଦ୍ୱିଗୁଣ ବଳରେ ପ୍ରହାର କରିବା)
ଦାରୋଗା—କିଛି କହିବାର ଅଛି – ବଦମାସ, ଡ଼ଙ୍କାସୁତ...
ରଘୁ—ଆନ୍ଦୋଳନକାରୀର କିଛି କହିବାର ନ ଥାଏ ।
ଦାରୋଗା—ପୁଣି ସେହି Temper, ତୋର ଦାନ୍ତ ଭାଙ୍ଗିବାକୁପଡ଼ିବ ।
ରଘୁ—ତଥାପି ସ୍ୱର ରହିବ ।
ଦାରୋଗା—ତୁ ଅପରାଧୀ – ୧୫ ଟା ଦଫାରେ ତୁ ଅଭିଯୁକ୍ତ ।
ରଘୁ—ଆହୁରି ଅଧିକା ଦଫା ହୋଇଥିବ ।
ଦାରୋଗା—କୁର୍ବାନ ଖାଁ –
କୁର୍ବାନ—ହଜୁର—
ଦାରୋଗା—S.I.
S.I.—ହଜୁର
ଦାରୋଗା—ବନ୍ଧୁଅଛି ପନ୍ଦ ମଗାଅ—ଜଲଦ –
S.I.—ହଜୁର

(ଏହି ସମୟରେ ବାହାରେ ମଟର ହର୍ଣ୍ଣ ଶୁଣାଗଲା । ଟିକିଏ ସମୟ ପରେ ଦେଓ୍ୱାନ ଆସି ପହଞ୍ଚିଲେ । ଦାରୋଗା ଆସନ ଦେଲେ )

ଦେଓ୍ୱାନ—ଏମାନଙ୍କର ଶକ୍ତ ବସ୍ତୁର କଟ...(ରଘୁକୁ ଚାହିଁ) ଏଟା କିଏ ସେ ?
ଦାରୋଗା—ସେ୍ର ରଘୁ ମହାନ୍ତି ।
ଦେଓ୍ୱାନ—ଏମାନେ (ଅନ୍ୟମାନଙ୍କ ପ୍ରତି)
ଦାରୋଗା—ଏଇଟା ସେ୍ର ଧନମାଳୀ ସାମ୍, ଏଇଟା ସେନାପତି – ଏଇଟା ଦବାକର...
ଦେଓ୍ୱାନ—ଏହି ଶଳା ଦବାକର ।

ଦାରୋଗା—ହଜୁର

ଦେଓ୍ୱାନ—ଶଳେ ଘାଗ୍ଲ ଲଗାଇଛନ୍ତି । କିଏ ଅଛରେ ଲଗାଅ ବନ୍ଧୁଅଡ଼ ।

(କନେଷ୍ଟବଲ ବନ୍ଧୁଅଛ ଅଣିବା)

ଦାରୋଗା—(ଠାରଦେଲେ—ସମସ୍ତଙ୍କୁ ବାନ୍ଧୁଅଛ ମାଡ)

କପିଲପାଣ୍ଡେ—ସୁଅ ପାଅ (ରଘୁପ୍ରତି)

ଦେଓ୍ୱାନ—ସେ ଶଳା ସିନ୍ଧୁ ମିଶ୍ର କାହିଁ ?

ଦାରୋଗା—Absconding

S.I.—ନୟାଗଡ଼ ଙ୍କ ଥାଙ୍ଗିରେ ଅଛି ।

ଦେଓ୍ୱାନ—(ଧମକ) ଚବିଶଘଣ୍ଟା ଭିତରେ ତାକୁ ଏହି ଜେଲରେ କଣ୍ଠା ଘଷିବାକୁ ପଡ଼ିବ ।

S. I.—ହଜୁର—

ଦାରୋଗା—ହଜୁର—

ଦେଓ୍ୱାନ—ଏ ଶଳା ରଘୁ ମହାନ୍ତି । ଡକାୟତ ଶଳା । ଏଇଠିକି ଅସ (ଠାରଦେବା) ହାଇରେ ଶଳା—ରାଜାଙ୍କ ବିରୁଦ୍ଧରେ ମଧ୍ୟ—କାହିଁକି ଏ ଷଡ଼ଯନ୍ତ୍ର ।

ରଘୁ—ଖାଲି ରାଜା ନୁହନ୍ତି, ଆପଣଙ୍କ ବିରୁଦ୍ଧରେ—କିନ୍ତୁ ଏ ଷଡଯନ୍ତ୍ର ନୁହେଁ ।

ଦେଓ୍ୱାନ - ଡ଼କାତ ମେହେନ୍ତରକୁ—ଏ ଶଳା ମୁହଁରେ ମୁତୁ—

ଦାରୋଗା—କନେଷ୍ଟବଲ (ଠାରଦେବା, ମେହେନ୍ତର ଡାକିବାପାଇଁ ଜଣେ ଯିବା )

ଦେଓ୍ୱାନ—ବନ୍ଧୁକ ଲଓ୍ଡ···

ଦାରୋଗା—କୁର୍ବାନ ଖାଁ, ସ୍ବା ଛାତିରେ ବନ୍ଧୁକ point କର ।

(କୁର୍ବାନ ତଦ୍ରୂପ କରିବା) (ଏହି ସମୟରେ ମେହେନ୍ତର ଜଣେ କନେଷ୍ଟବଲ ସହ ଅସିବା)

ଦାରୋଗା—ଏ ସମସ୍ତଙ୍କ ମୁହଁରେ ମୁତ—

ଦାରୋଗା—(ବନ୍ଧୁକ point କରି) କହ ଅଜଠାରୁ ଏ ସବୁ ଗଣ୍ଡଗୋଳ ଅଉ ହେବନାହିଁ । କହ Rascal.

ଦେଓ୍ୟାନ—Scoundral

କପିଳ ପାତ୍ର—ଏ, ସୁଅ ଉପଟିକି ନାଗିଲା । କୃଷ୍ଣଚନ୍ଦ୍ର, ନରେନ୍ଦ୍ର, ମହାପାତ୍ରଙ୍କ ରାଜ୍ୟରେ, ଫଗୁ ମହାନ୍ତିଙ୍କ ଅମଳରେ...

ଦାରୋଗା—ବନ୍ଧୁକ ଧର—One, two. କର୍, କର୍,...କର୍

ରଘୁ—ମାରବ—

ଦେଓ୍ୱାନ—Shoot him down.

ରଘୁ—ମାରବ ।

ଦାରୋଗା—କର୍, କର୍,—one, two, three ( ଏ ସମୟରେ ବ୍ଲାଙ୍କ ଫାୟାର ହେବା)

ଦେଓ୍ୱାନ—ଏ ସମସ୍ତଙ୍କ ବଗୁର ଏମିତ ହେବନି । କାଲି ପୁଣି ମଣିନାଗ ତଳେ ଏମାନଙ୍କର ବଗୁର ହେବ । ଏ ରଘୁ ମହାନ୍ତି (ରଘୁକୁ ଲକ୍ଷ କରି) କଣ କହୁଛୁ କହ ?

ରଘୁ—ମୁଁ କହୁଛି ପ୍ରଜାମଣ୍ଡଳର ଦାବୀ ସ୍ୱାୟତ୍ତ ଶାସନ, ଫିରିଙ୍ଗି ଶାସନ ଲୋପ । ଆପଣଙ୍କ ପରି ଅତ୍ୟାଚାରୀମାନଙ୍କର...

ଦାରୋଗା—(ଉତ୍ତ୍ୟକ୍ତ ହୋଇ) ଜୋତାରେ ଗାଲକୁ ମାରିବା ।

ଦେଓ୍ୱାନ—ରାଜଦ୍ରୋହୀ, ମେଳି ବିପ୍ଳବୀ, ବଦମାସ, ଗୁଣ୍ଡା !

ରଘୁ—ତଥାପି ମୋର ଗୌରବ । ଏହି ମାଟି ପାଇଁ ମୋର ରକ୍ତ ଝରିପାରେ... .

ଦେଓ୍ୱାନ—ଶୂର, Bastard ତୋତେ କବର ଦେବା ପୂର୍ବରୁ ତୋଠାରୁ ଅଦାୟ କରିବାକୁ ହେବ, ପ୍ରଜାମଣ୍ଡଳର ଅଭିସନ୍ଧି...

ରଘୁ—ଦେଓ୍ୱାନ ବାବୁ, ସବୁ ଯୁଗରେ ଏଇଆ ହୁଏ । ମଣିଷ ମଣିଷ ମଧ୍ୟରେ ଦଳେ ଦଲାଲ...

ଦେଓ୍ୱାନ—ଦଲାଲ !

ରଘୁ—ହଁ ଦଲାଲ, ଆପଣ ଇଂରେଜ ସରକାରର ଗୋଲାମ

ଦେଓ୍ୱାନ—ଦାରୋଗା (ଚଢ଼ା ଗଳାରେ)

ଦାରୋଗା—(ଅଣ୍ଟି ଦେବା)

କନେଷ୍ଟବଲ—(ରଘୁ ମୁହଁକୁ ଛେପ ପକାଇବା)

ରଘୁ—(ଉଚ୍ଚ ସ୍ୱରରେ) ଭାଇ ତମର ଏତିକି ଦୟା ଥାଉ । ଯେଉଁ-ମାନେ ଦେଶରେ ପ୍ରତି ମୁହୂର୍ତ୍ତରେ ଗୁଳି ଗୋଲା ମୁହଁରେ ଲକ୍ଷ ଲକ୍ଷ ପ୍ରଜାପାଇଁ ବିପ୍ଳବ କରୁଛନ୍ତି ସେହି ମରୁଭୂମିର ଯାତ୍ରୀ ପାଇଁ ତୁମର ଏହି ଟେଳ ବୁନ୍ଦାଟା ମରୁଝର ହେଉ । ଭାଇ—ବନ୍ଦୀତ ପୁରସ୍କାର...

ଦେଓ୍ୱାନ—ଦାରୋଗା, ଏମାନଙ୍କୁ ସାରା ରାତି ଧୂଆଁରେ ରଖିବ ।

କପିଳ ପାତ୍ର—ହଜୁର୍, ଧୂଆଁ ଅପେକ୍ଷା ଆମ୍ବ ଗଛ କାଇ ଭଲ ହେବ ।

ରଘୁ—(ବଡ଼ ହସଟାଏ ହସି) କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ...

ଦିବାକର—(ହସି) କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ···

ନାଥ—(ହା ହା ହସି) ମହାପାତ୍ରଙ୍କ ରାଜ୍ୟରେ

ବସନ୍ତ—ନାଇଁ ନାଇଁ କପିଳ ପାତ୍ର ରାଜ୍ୟରେ...

ଦେଓ୍ୱାନ—ଦାରୋଗା, ଏମାନେ ଦେଶଦ୍ରୋହୀ । ଏମାନେ ରାଜଦ୍ରୋହୀ, ଏମାନେ କଂଗ୍ରେସ ବାଦୀ । ଦେଶଦ୍ରୋହୀ ବେଆଇନ କଂଗ୍ରେସ ଅନୁଷ୍ଠାନର ଏମାନେ ଛାରପୋକ, କୀଟ । ବଦମାସ୍ କଂଗ୍ରେସ, ନିର୍ଲଜ କଂଗ୍ରେସ...

ରଘୁ—Shut...ଦେଓ୍ୱାନ ।

କପିଳ ପାତ୍ର—Shut up ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ···

ଦାରୋଗା—(ଆଖିଠାର ଦେବା, ଗୋଟିଏ କନେଷ୍ଟବଲ, ରଘୁର ତୋଟି ଚିପି ଧରିବା)

ଦେଓ୍ୱାନ—ଦିଅ ଶଳାକୁ ସୁଠ୍ କରି ଦିଅ ।

ରଘୁ—ତଥାପି ଚିପାଗଲାର ଚିତ୍କାର ବଜ୍ରଠାରୁ ଭୀଷଣ—ପାହାଡ଼ ଠାରୁ କଠିନ ।

କପିଳ ପାତ୍ର—ଦେଓ୍ୱାନଙ୍କ ସାମନାରେ, ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ······

ରଘୁ—ଚୁପ୍ କର ସତ୍ୟଦ୍ରୋହୀ......

ଦେଓ୍ୱାନ—ଦାରୋଗା—ସିନ୍ଧୁ ମିଶ୍ର ନାମରେ ଓ୍ୱାରେଣ୍ଟ···

ଦାରୋଗା—ଜୀ ହୋଇଛି ହଜୁର ।

ଦେଓ୍ୱାନ—ଏମାନଙ୍କୁ ଦିନରାତି ୨୪ ଘଣ୍ଟା ସଶସ୍ତ୍ର ପୋଲିସ ପ୍ରହରୀରେ ବନ୍ଦୀ......

ଦାରୋଗା—ହଜୁର ।

କପିଳପାତ୍ର—ହଜୁର ଏ ଖାଲି କୁହନ୍ତୁ ଏତିକି । ଏହାଙ୍କ ନାଙ୍ଗୁଡ଼ି ଅଛନ୍ତି । ଶୀଳ, ଛୋଟ ଦାମ, ସହଦେବ, ଆମ ଗାଁର ଆଉ ଗୋଟିଏ ଟୋକା ଅଛି.........

ରଘୁ—ବର୍ବର......

କପିଳ—(ହସି) ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ, କିଛି ଘଟିବନି । ତୋ ରକ୍ତ ଲହୁ ଜଞ୍ଜିର ପିଇବ ।

ରଘୁ—ରଘୁ ମହାନ୍ତି ହସି ହସି ଲୁହା ଜଞ୍ଜିରକୁ ବରଣ କରିଛି । ଲୁହା ଜଞ୍ଜିର ଯଦି ଆମ ଶୃଙ୍ଖଳ ଦେହର ଶେଷ ରକ୍ତ କଣା ପିଇନିଏ, ଆମର ଆପତ୍ତି ନାହିଁ । ଦୁଃଖ ନାହିଁ । ଆଉ ତୁମର ରକ୍ତମାଂସକୁ ଯେତେବେଳେ ଶାଗୁଣା ବେଢି ଖାଉଥିବେ, ପରାଧୀନତାର ମହାଶ୍ମଶାନରେ......

କପିଳ ପାତ୍ର—ଆରେ ରସଟିକି ନାଗିବ...

ଦେଓ୍ୱାନ—ରଘୁ ମହାନ୍ତି କହିବାକୁ ପଡ଼ିବ ତୋତେ.....ମୁଁ ତଥାପି ଦୁଇଦିନ ସମୟ ଦେଉଛି । ଦାବି ପତ୍ର ପ୍ରତ୍ୟାହାର କରିବ, ରାଜ୍ୟରେ ଷଡ଼ଯନ୍ତ୍ର କରିବ ନାହିଁ ।

ରଘୁ—ରଘୁ ମହାନ୍ତିର ଜାତକରେ ତାହା ନାହିଁ ।

ଦେଓ୍ୱାନ—ଦାରୋଗା, ଏହାଙ୍କ ଦେହରେ ପୋକ, ଜୋକ, ବିଛା ଛାଡ଼ିବାକୁ ହେବ ।

ଦାରୋଗା—ହଜୁର

ଦେଓ୍ୱାନ—ବିଛୁଆତିରେ ଶୋଇବାକୁ ପଡ଼ିବ ।

ଦାରୋଗା—ହଜୁର

ଦେଓ୍ୱାନ—ପ୍ରତି ଚାରି ଘଣ୍ଟାରେ ସମସ୍ତଙ୍କୁ ଚାବୁକ ପ୍ରହାର କରିବାକୁ ପଡ଼ିବ ।

ଦାରୋଗା—(ହାତ ଠାରିଦେଲେ, ଜୁବାନ ଖାଁ ପ୍ରହାର ଆରମ୍ଭ କଲେ, ମେହେନ୍ତର ସମସ୍ତଙ୍କ ମୁହଁକୁ ଛେପ ପକାଇଲା)

ଦେଓ୍ୱାନ—S.I. ତମ ବୁଟର ବଳ ପରୀକ୍ଷା କରିନିଅ ।

କପିଳ ପାତ୍ର—ହଁ...ହ...ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ (ଏହିକ୍ଷେତ୍ରେ ବେଳେ ବାହାରେ ଶୁଣାଗଲା ଇନ୍‌କଲାବ୍ ଜିନ୍ଦାବାଦ୍ ରାଜପଥ ମୁଖରିତ)

ଦେଓ୍ୱାନ—ଏ କଣ—ଶୋଭାଯାତ୍ରା......ଚାଲେ ଫାୟାରିଙ୍ଗ୍ କର

ସିନ ପଡ଼ିଲା

———

## ୪ର୍ଥ ଅଙ୍କ

### —ଦ୍ୱିତୀୟ ଦୃଶ୍ୟ—

(ରାଜାଙ୍କ ବୈଠକଖାନା—ମଦ ଖାଇ ରାଜା ମାତାଲ, ନକେ କରବୀ ମଧ୍ୟ ମାତାଲ ....ଦେଓ୍ୱାନ ମଧ୍ୟ ମାତାଲ ହୋଇ ପଡ଼ିଛନ୍ତି । କରବୀ ବୃଦ୍ଧ ରାଜାଙ୍କ ଶିରୋଦେଶରେ ହାତ ଦେଇ ଠିଆ ହୋଇଛନ୍ତି । ସଙ୍ଗୀତ ପିଲା ଦୁଇଟି ଗାଉଛନ୍ତି—ହାରମୋନିୟମ, ତାବଲା ବାଜୁଛି—ରାଜାଙ୍କୁ ସେଠୁ କରବୀ ଓ ଆଉ ଏକ ପୋଇଲା ସୀତା ଧରି ଭିତରକୁ ନେଇଗଲେ...... ଆସି ପହଞ୍ଚିଲେ କପିଳ ପାତ୍ରେ—ଦେଓ୍ୱାନ ମାତାଲ ହୋଇ ପଡ଼ିଛନ୍ତି ।

ଦେଓ୍ୱାନ—ଆଛାସେ, ଆଛାସେ ସଙ୍ଗୀତ, ଆହୁରି ହେଉ—ଖଣ୍ଡେ ନାଚ, ଖଣ୍ଡେ ନାଚ ହେଉ—

କପିଳ—କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ···

(ସଙ୍ଗୀତ ଚାଲିଥାଏ)

(ଏହି ସମୟରେ ହଠାତ୍ ଆସି ପହଞ୍ଚିଲେ ରେଞ୍ଜର, ପୋଷ୍ଟମାଷ୍ଟର)

ପୋଷ୍ଟ ମାଷ୍ଟର—କ'ଣ କଛ ନୂଆ ସଙ୍ଗୀତ ?
ଦେଓ୍ୱାନ—ଅରେ ମୋ ପୁଅର ମାମୁଁ ..ଚୁଲ୍ଲ ସଙ୍ଗୀତ ଚୁଲ୍ଲ ।
କପିଳ—ଏକ ସଙ୍ଗୀତ—କୃଷ୍ଣଚନ୍ଦ୍ର, ନରେନ୍ଦ୍ର, ମହାପାତ୍ରଙ୍କ ରାଜ୍ୟରେ...
(ବାହାରେ ଶୁଣାଗଲା ଇନ୍‌କଲାବ ଜିନ୍ଦାବାଦ...)

---

## ୪ର୍ଥ ଅଙ୍କ

### ତୃତୀୟ ଦୃଶ୍ୟ

(ପ୍ରଜାମଣ୍ଡଳ ଅଧିବେଶନ—ପତାକା ତଳେ ରଘୁନାଥ ଦବାକର ଠିଆ—ସିଂଧୁ ମିଶ୍ର ନୂଆ ସେନାପତି, ପଦନ ଦାସ ପ୍ରଭୃତି ଛଦ୍ମବେଶରେ କପିଳ ନାହାକ ଆଉ ଗୋଟିଏ ଭକାରୀ, ରଘୁ ବକ୍ତୃତା ଦେଉଛି କେତେକ ଲୋକଙ୍କୁ । ଅର୍ଜ୍ଜୁନ ରାଉତ ବସି କଟୁରି ଧାର ପଥରରେ । କମଳା ଗୋଟିଏ ଗୀତ ବୋଲିଲା ବେଳକୁ ସିନ୍ ଉଠିଲା)

ରଘୁ—ଭାଇମାନେ, ବହୁତ ଅତ୍ୟାଚାର ହେଲା । ବହୁତ କୁହେଁ, ଆହୁରି ହେବ ।

ଅର୍ଜ୍ଜୁନ—ଅତ୍ୟାଚାର ହେଲେ (କଟୁରି ଦେଖାଇ) ଆମରି ଚାଲିବ ।

ରଘୁ—ଛି ଅର୍ଜ୍ଜୁନ—ହିଂସାର ରକ୍ତରେ ତମେ ଅତ୍ୟାଚାରୀଙ୍କୁ ଜିଣିବା ଆଶା ବୃଥା—ରକ୍ତରେ କେବେ ହୃଦୟ ଜୟ ହୁଏ ନାହିଁ ।

ଅର୍ଜ୍ଜୁନ—ହଁ ଭାଇ, ଏଇଥିରେ ସବୁ ସାବାଡ଼ (ପୁଣି କଟୁରି ଦେଖାଇ)

ସିଂଧୁ—ହିଂସାର ସ୍ଥାନ କଂଗ୍ରେସରେ, ପ୍ରଜାମଣ୍ଡଳରେ ନାହିଁ ।

ଅର୍ଜ୍ଜୁନ—ଆସୁ ଯେତେ ସାହେବ, ଆସୁ ରାଜା, ଆସୁ ଦଅନ୍ନ, ଏଇ କଟୁରି ସବୁ ସାବଧାନ କରିଦେବ ।

ସିଂଧୁ ମିଶ୍ର—ତମକୁ ବାର ବାର କହୁଛି, ଧୀର ସ୍ଥିର ହୁଅ, ହିଂସାର ନା, ଧରନା—

ରଘୁ—ବୁଝିଲ ରାଉତ, ଫୁଲଟାକୁ କଉଁରରେ କାଟିବା ଦରକାର ନାହିଁ ବଣରେ ଯେଉଁ ଫୁଲ ଫୁଟି ଯାଏ, ଆପେ ଆପେ ଝଡ଼ି ପଡ଼େ ।

ଅର୍ଜ୍ଜୁନ—କଣ୍ଟୁରି ଖାଲି କଣ୍ଟୁଣି ଲୋଡ଼ା—
ରଘୁ—କାହିଁ କି ?
ପଦଦାସେ—ହଁ କଣ୍ଟୁଣି ଲୋଡ଼ା, କଣ୍ଟୁଣିରେ, ଠେଙ୍ଗାରେ ଗୁଳିଗୋଳା ବାରୁଦର ଶାସନକୁ ଭାଙ୍ଗି ଦେବାକୁ ପଡ଼ିବ ।
ରଘୁ—ତମେ ପଦନ ମଧ୍ୟ ଅବୁଝା—ଆଠ ଦିନ ତଳେ ଜେଲରେ ଅସହାୟ ଅବସ୍ଥାରେ ଆମକୁ ଯେଉଁ ମାଡ଼, ଯେଉଁ ପଶୁ ରାକ୍ଷସ ଦଳ ଆମର ଉପରେ ଛାଡ଼ି ଦିଆଗଲା ସେହି କାନୁନ୍ଦାର ହିଂସାକୁ କଣ ତୁମେ ହିଂସାରେ ପାରିବ ଅର୍ଜ୍ଜୁନ ?
ଅର୍ଜ୍ଜୁନ—ରକ୍ତ ଚାହେଁ ରକ୍ତ—ପାଇକଦୋକାର ରକ୍ତ ।
ରଘୁ—ତଥାପି ବିନା ରକ୍ତରେ ଆମର ଏହି ଆନ୍ଦୋଳନ ।
ରାଉତ—ରକ୍ତ ଖାଲି, ରକ୍ତ ଭାଇ, ଖାଲି ରକ୍ତ
ରଘୁ—ଶୁଣ ରାଉତ । ଏକ ଦିଗରେ ଅତ୍ୟାଚାରୀର ବେଶଷ ସ୍ୱରୂପ, ଅନ୍ୟ ଦିଗରେ ଆମ ଅନ୍ତରର ବଳ, ହୃଦୟର ଅସୀମ ସାହସ ।
ଦିବାକର—ଏକ ଦିଗରେ ନିଆଁ, ଅନ୍ୟ ଦିଗରେ ଆମର ସେବା
ରଘୁ—ଯାହା କହୁଛନ୍ତି ଦିବାକର ବାବୁ—ଶୁଣ ରାଉତ ସବୁ ସତ । ଆମକୁ ଏପରି ସଂଯତ ଶୃଙ୍ଖଳିତ ମାର୍ଗରେ ନିବାକୁ ପଡ଼ିବ, ମହାତ୍ମା ଗାନ୍ଧୀ କଂଗ୍ରେସ ପ୍ରଜାମଣ୍ଡଳର ପନ୍ଥା ମହା ଦରିଦ୍ର ସେବକର ପନ୍ଥା—
ରାଉତ—ମତେ ଜଣେ ଗୃପୁଡ଼ା ଠାଏ ମାରିଲେ ?
ରଘୁ—ବେଶ ଅରଗାଲି ଦେଖାଇ ଦେବ ।
ରାଉତ—ଏ କଥା ଭାଇ ବଡ ବିଷମ—
ରଘୁ—ଯେଉଁଠି ସାଧନା ସେଇଠି ପଥ ବିଷମ ହୁଏ ।
ରାଉତ—ଖାଇବାକୁ ନାହିଁ, ଲୁଗା ନାହିଁ, ପଠା ନାହିଁ କହିବାର ଅଧିକାର ନାହିଁ ଆମ ମୁହଁରେ ମୂତିବେ, ବନ୍ଧୁଆଡରେ ବାଡେଇବେ, ଧୂଆଁ ଦେବେ, ଦିବାକର କହୁଛନ୍ତି ସବୁ ସହିବା, ଖାଲି ସହିବା ।
ରଘୁ—(ହସି ହସି) ହଁ, ହଁ ସବୁ ସହିବା ।

ସଉତ – (ଖାଲି ହସିବା)

ରଘୁ – ତମେ ଦେଖିଥିବ, ଝଗଡବଳେ କଦାଚ ଡାଳରେ ନଇବାଲରେ ଯେଉଁ ବାଡୁଅ ଯାଉଥାଏ, ସେ କଣ ଚାରିକକ୍ଷରେ ଫେରିଯାଏ, ତାକୁ ଅଗକୁ ନିବାକୁ ହୁଏ । ତେଣୁ ସେ ସବୁ ସହେ ।

ସଉତ – ଆମର ଇଜ୍ଜତ ନେବେ । ଏଇଥି ପାଇଁ ସବୁ ସହିବା –

ଦିବାକର – ତଥାପି ସହିବା ।

ମିଶ୍ର – ଏମିତି ହୁଏତ ଦିନେ ମରିବାକୁ ପଡ଼ିବ ।

ସଉତ ମରିବା ପୂର୍ବରୁ ମୋତେ କୁହନ୍ତୁ ସବୁ ସାବାଡ଼ କରଦେବି ।

ରଘୁ – ସଉତ ମୋର ଯାହା ଜେଲରେ ଅନୁଭୂତି, ବର୍ତ୍ତମାନ ଆମେ ଖସି ଅସିଛୁ । ତମେମାନେ ଗାଁ ଗାଁ ଲୋକଙ୍କ ପାଣ୍ଠି ଭୁଣ୍ଡ କରିବାକୁ ଛାଡ଼ ଦେଇଛନ୍ତି । ପୁଣି କେତେବେଳେ ଡାକେବ ଅସିବ । ମୋତେତ ଛାଡ଼ୁ ନ ଥିଲେ, ମୁଁ ଜେଲରୁ ଲୁଚି ପଳେଇ ଅସିଛି । ମିଶ୍ରଙ୍କ ଉପରେ ଓ୍ୱାରେଣ୍ଟ ଝୁଲୁଛି – ଏଥିରେ ତମେମାନେ ଧୈର୍ଯ୍ୟ ନ ହରାଇ ଧୀର ସ୍ଥିର ହୁଅ । ଶାନ୍ତ ଶୃଙ୍ଖଳିତ ହୁଅ ।

ସଉତ – କପିଳା ରଇନ କଥା ମୁଁ ଶୁଣିବି ? ସେ ଖାଲି ଭୟ ଦେଖାଉଛି । "ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ"

ରଘୁ – ହଁ, ହଁ ସେହି ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ ଅମେ ମେଣ୍ଢା ଆମର ମଣିଷ ମେଣ୍ଢାକୁ ଚରାଇବା ପାଇଁ ଯୁଗେ ଯୁଗେ ଇତିହାସର ପୃଷ୍ଠାକୁ ଛନ୍ନ କରି ଅତ୍ୟାଗୃସୀ ରାଜା ଜନ୍ମ ହୁଅନ୍ତି)

ସଉତ – ନା ଭାଇ ଅମେମାନେ ମେଣ୍ଢା ନୁହଁ – ତମେ ଏବେ ରଘୁଭାଇ କହିଲ କି କଷ୍ଟ ତୁମକୁ ଜେଲରେ ଦେଲେ···

ରଘୁ – ମୁଁ ସମସ୍ତଙ୍କୁ କହିବାକୁ ଚାହେଁ, ମୁଁ କିଛି କଷ୍ଟ ପାଇନି ।

ସଉତ – ନାନା ସେ ସବୁ ମିଛ । ଜେଲ ଭିତରେ ପଥର ପାଟେଖ ତଳେ ଏହି ଦିଅନ ଦାରୋଗା ଯାହା କଲେ ଅମେ ଶୁଣିଛୁ । ଅମେ ଶୋଭାଯାତ୍ରା କରୁଥିଲୁଟି...ତୁମ ଜେଲରେ କଣ ହେଲା ।

ରଘୁ—ଆମେ ଦୋଳରେ ବସିଥିଲୁ,

ସିଦ୍ଧୁ ମିଶ୍ର—ଅଜ ଭୁବାନ ଗାଁ। ତାକୁଂ ସବୁ ଝୁଲଉଥିଲୁ ।

ସଭ୍ରତ—କଣ ମହିଷ ହାଡ଼ ମାଣ୍ଡିସରେ ତେସବୁ ଦୋଳ ତିଆର ହୋଇଛି ?

ସିଦ୍ଧୁ—ନାହିଁରେ ମଣିଷର ଅଙ୍ଗୁଠି, ଚମଡ଼ା ହାଡ଼ ସବୁ ମିଶି ମଜଭୂତ ଦୋଳ ହୋଇଛି ।

ସଭ୍ରତ—ଜଣ କହୁଛ ଭାଇନା, ମୋ ରକ୍ତ ଶୀଘ୍ର ଯାଉଛି ।

ରଘୁ—ଯେତେବେଳେ ସମୁଦ୍ରରେ ଯୁଆର ଉଠେ, ଉତ୍ ଫୁଲ ଫେନଭୂତ ଢେଉ ସବୁ ଅସି ଅସି ବେଳା ବନରେ ଲେଟିପଡେ, ରକ୍ତ ଗରମ ହେଲେ ସେପରି ତାକୁ ଶୀତଳ କରିବାକୁ ହେବ ।

ପଦକ ଦାସ—ଅପଣଙ୍କ ସବୁ କଣ୍ଟ କହିଲେ ନାହିଁ ।

ରଘୁ—ଯେତିକି ଦରକାର, ସେତିକି ଜାଣ, କଏ କେଉଁଠି ପଡ଼ୁଛନ୍ତି, ପତ୍ତା ନାହିଁ । ଗୃହଅଙ୍କେ ଫୁଲସ—ଗୃହଅଙ୍କେ ସଂଗୀନ ଫଉଜ- ଏଥି ମଧ୍ୟରେ ଅମକୁ ଶୃଙ୍ଖଳାରେ କାର୍ଯ୍ୟ କରିବାକୁ ପଡ଼ିବ ।

ସଭ୍ରତ—ରଘୁ ଭାଇ ଅମାନୁଷିକ ଅତ୍ୟାଗୃହୀ ନିକଟରେ ଶୃଙ୍ଖଳା କଥା କହୁଛ ?

ରଘୁ—ତେବେ ମନେ ରଖ, ଦାବୀପତ୍ର ରାଜା ଅଧାଅଧି ଗ୍ରହଣ କରିଛନ୍ତି । ଲୋକଙ୍କ ପକ୍ଷରୁ ଶାନ୍ତି ଶୃଙ୍ଖଳା ପୂର୍ଣ୍ଣ ଅନ୍ଦୋଳନ ଅରମ୍ଭ କଲେ ରାଜା ଦିନେ ନା ଦିନେ ଦାବୀ ଗ୍ରହଣ କରିବାକୁ ବାଧ୍ୟ ହେବେ । ଅଜ ଅମ ଉପରେ ଯାହା ଏ ଭିତରେ ଅତ୍ୟାଗୃର ହେବ, ସେଇଟା ପ୍ରକୃତରେ ଅଲକ୍ଷରେ ଅମ ପ୍ରତି ଅଶୀର୍ବାଦ ।

ସଭ୍ରତ—ସେମିତି କହନା ରଘୁ ଭାଇ ।

ରଘୁ—ଲୁହା ନିଆଁରେ ତାତିଯାଏ, ପୁଣି ଲୁହାର ହାତୁଡ଼ି ସେହି ଲୁହାକୁ ସଲଖି ସୁନ୍ଦର କରି ଦିଏ, ନୂଆ ରୂପ ଦିଏ । ହାତୁଡ଼ିର ବେଦନା ରହେ ନାହିଁ । ଅମରି ଭାଇ ଅମରି ଉପରେ ମୁଣ୍ଡରେ ହାତୁଡ଼ି ପ୍ରହାର କରିବେ, ତାହାହେଲେ ଅମେ ନୂଆ ରୂପ ପାଇବା । ନଦାଦ୍ଧ.ଅକାଶ କୋଣରେ ଯେଉଁ ଘଞ୍ଚ ମେଘମାଳା

ତ୍ରିଲ ପନ୍ତ ପର ବୁଲୁଥାଏ, ଅଦନରେ ବଜ୍ର ଗର୍ଜ୍ଜନ କରୁଥାଏ, ଗୁଳଗୁଳ ତାଡ଼ରେ ଧରଣୀ ପୀଡ଼ା ପାଏ, ସେହୁ ମେଘ ପୁଣି ପ୍ରଥମ ପ୍ରାବୃଟରେ ଅମୃତ ଧାରରେ ଝରିପଡ଼େ । ପୃଥିବୀକୁ ସବୁଜ ସୁନ୍ଦର କରିଦିଏ । ଆମକୁ ସେମିତି ଅପେକ୍ଷା କରିବାକୁ ପଡ଼ିବ ।

ରାଉତ—ଯେତେବେଳେ ହାତୁଡ଼ି ମାଡ଼ବସିବ, ସେତେବେଳେ ଅପେକ୍ଷା, ଅସମ୍ଭବ କଥା—

ରଘୁ—ଜୀବନରେ ଅପେକ୍ଷା କରିବାକୁ ହୁଏ । ଯେମିତି ଫିକା ପାହାନ୍ତା ତଳେ ସୂର୍ଯ୍ୟ ପାଇଁ ପଦ୍ମକୁ କାନ୍ଦିବାକୁ ହୋଇଥାଏ, ତାହାକୁ ଜାଗରଣ ଢଙ୍ଗ ସଙ୍ଗରେ ବହୁତ ଆଘାତ ସହିବାକୁ ହୁଏ । ପେଟ ପିଠି ଫାଟେ-ଫୁଟେ, ସେଥିରେ କ୍ଷତି କଣ ?

ସିନ୍ଧୁ—ତମେ ରଘୁ କଥା ବନ୍ଦ କର । ଆଉ ଅନ୍ୟ କାମ ଅଛି ।

ରଘୁ—ତେବେ ସମସ୍ତେ ଶୁଣୁଛ, ଏ ପତାକାକୁ ଛୁଇଁ ଶପଥ କର— ଭାଇମାନେ ପୂର୍ଣ୍ଣ ଅହିଂସା ଭାବରେ କାର୍ଯ୍ୟ କରିବାକୁ ପଡ଼ିବ ।

ରାଉତ—ହଉ, ଆମେ କାର୍ଯ୍ୟ କରିବୁ ।

ରଘୁ—ଏ ପତାକାର ମାନ ଜୀବନ ଅପେକ୍ଷା ଢେର ବେଶୀ (ସମସ୍ତେ କରତାଳି ଦେବା) ।

ଆଉ ଗୋଟିଏ କଥା, କିଏ କେଉଁଠାରେ ରହିବେ ତାହା ଜାଣି ହେବ ନାହିଁ । ତେଣୁ ଦାବିପତ୍ର ପୂରଣ ହେଲାଯାଏ ଆମକୁ ସଂଗ୍ରାମ ଚଳାଇବାକୁ ହେବ । କେତେବେଳେ କେଉଁଠି ସଭା ହେବ, ଆଗରୁ ଗୁପ୍ତଚରମାନଙ୍କ ଦ୍ୱାରା ପ୍ରଚାରିତ ହେବ । ଆପଣମାନେ ଧୀରସ୍ଥିର ଭାବରେ ଆସି ପ୍ରଜା ମଣ୍ଡଳରେ କାମ କରିବେ ।

ରାଉତ—ଭାଇ ଢେଙ୍କାନାଳ ଖବର କଣ ହେଲା ଯେ—

ରଘୁ—ସେଠିତ ଦମନ ଚାଲିଛି । ଆମର ଏଠି ଯେମିତି, ସେଠି ଏହା ଅପେକ୍ଷା ଅଧିକ ଭୟଙ୍କର । ଗୋରା ଫଉଜ, ଗୁର୍ଖାବାହିନୀ, ଢେଙ୍କାନାଳର ଅଙ୍ଗ ଅତିଥି ।

ସିନ୍ଧୁ—ହେଉ ହେଲା । ରଘୁବାବୁ ତୁମେ ବିଶ୍ରାମ ନିଅ ।

ରଘୁ—ନାହିଁ, ଅଉ ବିଶ୍ରାମ କଣ । ଆମେ ଏଠାରୁ ଗୁଲିଯିବୁ । ଆପଣମାନେ ଯେପରି ସୁରୁଖୁରୁରେ ସବୁ କାମ କରୁଥିବେ—

(ଦଳାକର ରଘୁ ଗୁଲିଯିବାକୁ ଉଦ୍ୟତ ବେଳେ—ହଠାତ୍ ପଛେ ପଛେ ଛଦ୍ମବେଶୀ ଭଡ଼ାଘାଟି ବାହାରକୁ ଯିବା, ପଛେ ପଛେ ଛଦ୍ମବେଶଧାରୀ ମାଗି ନାହାକ ଯିବା, ବାହାରେ ପୁଲିସ ବୁଟ ଶବ୍ଦ ଧମାଧମ, ଦାରୋଗା କନେଷ୍ଟବଲ ପ୍ରଭୃତି)

'ରଘୁ ଦଳାକର ପଦନ ଦାସେ ଡେଇଁ ପଡ଼ି ଅନ୍ୟ ଦଗରେ ଗୁଲିଯିବା, ସିନ୍ଧୁ ମିଶ୍ର ଗୁଲିଯିବା ବେଳେ, ପଛରୁ ଦାରୋଗା ଧାଇଁ ଆସି ବେକକୁ ଚିପି ଧରିବା, କନେଷ୍ଟବଲ୍ ବନ୍ଧୁକ ଦେଖାଇବା, ସଙ୍ଗେ ସଙ୍ଗେ ଦେଉଡ଼ି କରିବା; ଲୋକମାନଙ୍କୁ ସଚିଗୁଲିଲା—କମଳା ଦେବୀଙ୍କୁ ଘେରି ପୋଲିସ

ଦାରୋଗା—ହଠା ଅ ଏହି ଜନତାକୁ,କାଳି ଏ ପଡ଼ାକାକୁ, କାଳ ଏହି ଘର···(ପୋଲିସମାନେ କାଗଜପତ୍ର ପୋଡ଼ିଦେବା,ପଡ଼ାକାଟିକୁ କମଳା ଦେବୀ ଖାଇ ଯାଉଥିଲେ—ପୋଲିସ ତାଙ୍କ ଗଳା ଧରି ପକାଇବା—ଲୋକମାନେ ଉତ୍ତ୍ୟକ୍ତ ହେବା—ପୋଲିସ ସମସ୍ତଙ୍କୁ ହଟାଇ ଦେବା) ।

ଦାରୋଗା—ଗିରଫ କରି ଗୁଲ ଥାନାକୁ ।

(କେବଳ କମଳାଦେବୀ ଏକା, ଦାରୋଗା ବ୍ୟତୀତ ଅନ୍ୟ ସମସ୍ତେ ବନ୍ଦୀ ଅବସ୍ଥାରେ ବାହାରକୁ ଗଲେ) (ଦାରୋଗା କମଳାର ମୁହଁକୁ ଗୁହିଁ) ତମ ନାଁ···

କମଳା—(କଟାକ୍ଷେ) ଦରକାର ।

ଦାରୋଗା—ତମ ନାଁ ।—(ପାଖକୁ ଗୁଲିଆସି)

କମଳା—ଛାୟା,

ଦାରୋଗା—କାହାଣ୍ଡି ଅ ?

କମଳା—ରଣପୁର ମା'ର

ଦାରୋଗା—ବାପାଙ୍କ ନାମ

କମଳା—ଭାରତବର୍ଷ ।
ଦାରୋଗା—(ଟଙ୍କା ଦେଖାଇ) ଦରକାର ?
କମଳା—ହଁ ଦର୍କାର ।
ଦାରୋଗା—(ପଚାଶଟଙ୍କା ଦେଖାଇବା)
କମଳା—( କମଳା ଟଙ୍କା ନେଇ ଦାରୋଗା ଉପରକୁ ଜୋରରେ ଫୋପାଡିବା ।)
ଦାରୋଗା—କମଳା, ତମର କି ରୂପ !
କମଳା—ବଦମାସ୍ ,
ଦାରୋଗା—କମଳ (ଦେହ ଉପରକୁ ଅଉଜି ଆସିବା)
କମଳା—ଦୂରରେ ଠିଆ ହୁଅ—ମୂର୍ଖ
ଦାରୋଗା—ସୁନ୍ଦରୀ ତମେ...କେତେ ସୁନ୍ଦରୀ !
କମଳା—(ଦାରୋଗା ମୁହଁକୁ ଛେପ ପକାଇବା—ନିର୍ଲ୍ଲଜ—
ଦାରୋଗା—ହୁଁ ତମର, ଏଠ କାମ,
କମଳା—ତମର ଯାହା ଜ୍ଞାନ...
ଦାରୋଗା—ରଘୁ ବୁଅଡେ଼ ଗଲା—
କମଳା—ମାମୁଁ ଘରକୁ
ଦାରୋଗା—ଏହି ଦେଖ, ଭାବ, ମୋତେ ଧରା ଦେବ ନାହିଁ.........
କମଳା—ଚୁପ ରହ, ଚୋର,
ଦାରୋଗା—(ପାଖକୁ ପୁଣି ଲାଗି ଆସିବା, ଛାତିକୁ ରିଭଲଭର ଦେଖାଇ)
କମଳା—ସାବଧାନ, ନାରୀ ଜାତିର ମୁଁ ପ୍ରତୀକ, ତୁ ମୋ ସହିତ କଥା-ବାର୍ତ୍ତା କରିବା ଅର୍ଥ...
ଦାରୋଗା—ଅତି ଲାଗି ଆସି, ରିଭଲଭର ଦେଖାଇଥାନ୍ତି)
କମଳା—(ହାରାମ—ଜାଦା, ଦାରୋଗା ଗାଲରେ ଏକ ଗୁସୁଡା ଦେଲା,) ଦାରୋଗା ହାତରୁ ରିଭଲଭର ଖସି ପଡ଼ିଲା ବେଳେ ପଟ୍ଟ ପତନ

( ସ୍ୱିନ୍ ପଡ଼ିଲା )

# ଚତୁର୍ଥ ଅଙ୍କ

## ଚତୁର୍ଥ ଦୃଶ୍ୟ

(ରଣପୁର ଜଙ୍ଗଲ, ବାଟରେ ଦୁଇ ଗୃହଠା ଫୁଲ ଝଡ଼ ପଡନ୍ତି ଶୀକାରୀ ବେଶରେ ବେଟଜଲ ଗେଟ୍—ବନ୍ଧୁକ ହାତରେ ଝୁଲୁଛି, ସାଥିରେ ଦାରୋଗା ରେଞ୍ଜର ପ୍ରଭୃତି—ଗଛ ଉଠିଲାବେଳକୁ ବେଜେଲଗେଟ ଗୋଟିଏ ପକ୍ଷୀକୁ ମାରିବାକୁ ଉଦ୍ୟତ ହେଉଛନ୍ତି । ଏହି ସମୟରେ ଦୂରରେ ଶୁଣାଗଲା ବନ୍ଧର ଗୀତ—ବନ୍ଧ ବନ୍ଧୁଣୀ)

ବେଜେଲଗେଟ—What a fine song ?

ରେଞ୍ଜର—Your honour,

ଦାରୋଗା—Your honour,

ବେଟଜଲ—ତାହାଁ ସେ ଅଇସା, ସଙ୍ଗୀତ କୋ ଭଗଲୁ ଅସଠା ହେ...

(ଗୀତ ପୁଣି ଶୁଭିଲା—

ପ୍ରଜାମଣ୍ଡଳ ଡାକରା ଅସିଛି ରେ

ବନ୍ଧ ମିବୁ କ ନାହିଁ ତୁ ଯା—

ବେଜେଲ—(ଅବଚଳିତ) ଟକା ଝୁଁଗରୁ

(ଗୀତ ନିକଟ ହୋଇ ଅସିଲା

ଗୀତ ଯେତିକି ନିକଟ ହେଲା, ସମସ୍ତେ ସେତିକି ଉକ୍ରଣ୍ଠ ହୋଇ ଲୁଚିବାକୁ ଗଲେ)

ବେଜେଲ—Let us hide behind the bush.

(ବନ୍ଧ ବନ୍ଧୁଣୀ ଗୀତ ଗାଇ ଗାଇ, ବିପରୀତ ଦଗରୁ ଅସିଲେ ।
(ବନ୍ଧ ଅସି ଅଭିମାନ କରି ଠିଆ ହେଲା । ବନ୍ଧୁଣୀ ଅହୁରି ମୁହଁ ଫୁଲେଇ ପଛକୁ ଗୁହିଁବା)

ବନ୍ଧ—ରସିକା ଲେ, ଟିକିଏ ପାଖକୁ ଅ,

ବନ୍ଧୁଣୀ—ମୋତେ କାଛ କହନା ରେ...

ବନ୍ଧ—ଯଦେ ଗୀତ ଗାଇବା ।

ବନ୍ଧୁଣୀ (ଅଭିମାନରେ ଠିଆ ହେବା )

(ବନ୍ଧ ଗୀତ ଗାଇ ବନ୍ଧୁଣୀ ବେକରେ ହାତ ବେଢ଼ାଇ ଦେବା)

କନ୍ଧୁଣୀ—(ହାତ ଛଡ଼ାଇ ଦେଇ )
କନ୍ଧ—ଫୁଲ ଲଗେଇବୁ କାଲେ···(କନ୍ଧ ଫୁଲ ଦଶା ଗଛ ତଳେ ପଡ଼ିଥିଲା ଆଣି କନ୍ଧୁଣୀ ମୁଣ୍ଡରେ ଖୋସି ଦେଲା)
କନ୍ଧୁଣୀ—ଅଭିମାନ କରି ଠିଆ ହେଲା ··
କନ୍ଧ—(ଗୀତ ଗାଇ ଅଣ୍ଟାରୁ କାଗଜଟି କାଢ଼ି ଗଛ ଦେହରେ ଲଗେଇ ଦେଉ ଦେଉ ଅନ୍ତରାଳରୁ ଜୋତା ଶବ୍ଦ ଶୁଭିଲା) ।
ବେଜଲଗେଟ୍—Hallo, what beautiful
(କନ୍ଧ କନ୍ଧୁଣୀ ମୂର୍ତ୍ତିକ ମଧ୍ୟରେ ବିପରୀତ ଦିଗରେ ଚାଲିଗଲେ)
ରେଞ୍ଜର—Your honour.
ବେଜଲଗେଟ—What people they are, are they···
ରେଞ୍ଜର—Your honour
ବେଜଲ—[କାଗଜ ପାଖକୁ ଯାଇ] What paper is this !
ରେଞ୍ଜର—Your honour
ବେଜଲ—ଦାରୋଗା, ଏ କ୍ୟାହେ, ଏ କ୍ୟା ପ୍ରଜାମଣ୍ଡଳକା କୋନ କାଗଜ ହେ···
ଦାରୋଗା—Your honour,
ବେଜଲ—What your honour, Rascale, ଜଙ୍ଗଲକା ଏ ସବୁ କ୍ୟାହେ, ପ୍ରଜାଙ୍କର କ୍ୟା ଅପଟି ଅଭିଯୋଗ ହେ ।
ଦାରୋଗା—Your honour—petition ହେ,
ବେଜଲ—କ୍ୟା petition ହେ, କପି ଇଟି
(ଏହି ସମୟରେ ବଣର ଗଛ ଉଢ଼ାଳରେ ଖସ୍ ଖସ୍ ଶୁଭିଲା ।
ବେଜଲ—ଓ, କ୍ୟା ଶିକାର ହେ···(କହି ବଣ ଭିତରେ ପଶିଲା—ପଛରେ ରେଞ୍ଜର ଦାରୋଗା ଗଲେ)

———

# ଚତୁର୍ଥ ଅଙ୍କ

## —ପଞ୍ଚମ ଦୃଶ୍ୟ—

ଦଶରା ଦିନ, ରାଜପ୍ରସାଦ ଉତ୍ସବ ଭିତରେ ସମସ୍ତେ ଉପସ୍ଥିତ—ଦେଓ୍ୱାନ, ଦାରୋଗା, କପିଳ ପାଣ୍ଡେ, ବନ୍ଧୁ ପ୍ରଜା, ଗ୍ରେପଦାର, ପୁରୋହିତ—ମିସ୍ ଜରେଖ୍ୱା—ସମସ୍ତେ ଏ ପଟ ସେ ପଟ ହେଉଛନ୍ତି—ଶଙ୍ଖ କାହାଳୀ ଢୋଲକ ଢଡ଼ି ବାଜୁଛି—ବାହାରେ ବଡ଼ କାଠ, ବାଜୁଛି—ଚର୍ଚ୍ଚିତ ହାତୀ ଘୋଡ଼ା । ଆଜି ଦଶହରା—ପାଇକମାନେ ଖଣ୍ଡା ଧରି ଖେଳ ପାଇଁ ବ୍ୟସ୍ତ—ସିନ୍ ଉଠିଲା—କପିଳ ପାଣ୍ଡେ—ଚୁଟିରେ ଫୁଲ ବାନ୍ଧି ପୁରୋହିତେ ପଢ଼ୁଛନ୍ତି......

ପୁରୋହିତେ—ଶ୍ରୀଳ ଶ୍ରୀଯୁକ୍ତ ଶ୍ରୀ ଶ୍ରୀ ପ୍ରବଳ ପ୍ରତାପୀ ବଜ୍ରଧର, ଦାନେ କର୍ଣ୍ଣ, ମାନେ ଦୁର୍ଯ୍ୟୋଧନ, କ୍ରୋଧେ ଯମ, ପ୍ରତାପେ ଇନ୍ଦ୍ର, ଧନେ କୁବେର, ଧର୍ମେ ଯୁଧିଷ୍ଠିର, ସହନେ ପୃଥିବୀ—ମହତୋ ମହୀୟାନ—ସମଦର୍ଶୀ ଦେବ, ଦ୍ୱିଜ, ଗୋ ଭକ୍ତ, ଧର୍ମାବତାର ମିଷ୍ଟଭାଷୀ, ଶୁଦ୍ଧାଗୃହୀ, ଶାସ୍ତ୍ରଦର୍ଶୀ, ସର୍ବପ୍ରିୟ, ସଦାଳାପୀ ରାଜର୍ଷି, ଆଦର୍ଶ ଚରିତ୍ର, ଚରିତ୍ରବାନ, ଗୁଣବାନ୍, ହୃଦବାନ୍ ପ୍ରଶାନ୍ତଚେତା, ଦର୍ପବଦର୍ପଜେତା, ବାଣୀବିହାର ଭକ୍ତ, ସାହିତ୍ୟୋଦ୍ୟାନ ବିହାର କଳହଂସ, ଦେଶବତ୍ସଳ, ପ୍ରଜାରଞ୍ଜନ ମାତାର ଯୋଗ୍ୟ ପିତାର ସୁଯୋଗ୍ୟ ସନ୍ତାନ, ବହୁ ଗୁଣାକର ଆଦର୍ଶ ପିତା, ଭ୍ରାତା, ସ୍ୱାମୀ, ପୁତ୍ର, ପୌତ୍ର ପିତାମହ ସତ୍ତ୍ୱ ଗୁଣ ବିଶିଷ୍ଟ ମହା ମହିମ ମାନ୍ୟବର ଶ୍ରୀଳଶ୍ରୀଯୁକ୍ତ ଶ୍ରୀମନ୍ତ ହାଟେରପମ ରାଜ ପଥିକ ଧରା ଧଟରଶ୍ୱର ଉତ୍କଳଖଣ୍ଡ, ଭାରତବର୍ଷ, ବିଶ୍ୱବ୍ୟାପୀ ସ୍ୱନାମଧନ୍ୟ ଦୟାବତାର ଅମୃତ ମହାପୁରୁଷଙ୍କ ଶ୍ରୀକର କମଳରେ ଶ୍ରଦ୍ଧା, ଭକ୍ତି, ସ୍ନେହ ଅନୁରାଗ ସହାନୁଭୂତିର ଗୁଢ଼ତମ ଅନ୍ତରର ନିଦର୍ଶନ ସ୍ୱରୂପ ଆଜି ଏହି ଦଶହରା ବାସରେ

ଶୁଭଉଥିରେ ଲଗ୍ନରେ···ବୀରବର ବଜ୍ରଧର ନରେନ୍ଦ୍ର ମହାପାତ୍ରଙ୍କ ଦୟାହେଲେ, ଦଶହରା ଅନୁକୂଳ ହେବ ।

(ବାହାରେ ବଡ଼ କାଠ ବାଜବା···

କପିଳ ପାତ୍ର—ବିନୟ ଧର୍ମ, ନ୍ୟାୟ, କ୍ଷମା, ସତ୍ୟଗୁଣ ବିଶିଷ୍ଟ ମହାନ୍ ମହାଭାଗ ନରେନ୍ଦ୍ର କୁଳ ମୌଳି, ପୁଣ୍ୟପ୍ରତାପ ଧରା ଧରେଶ୍ବର ବୀରବର ଦେବତାବନ୍ଦିତ ଶ୍ରୀ ଶ୍ରୀ ଶ୍ରୀ ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ······

ଆସ ଭ୍ରମରବର, ମାନ୍ଧାତା ପଟ୍ଟନାୟକ, ବୀରବଳ ଦଳ-ବେହେରା, ବୈରୀଗଞ୍ଜନ ମହାପାତ୍ର, ଭ୍ରମରବର ମର୍ଦ୍ଦରାଜ, ନରେନ୍ଦ୍ର ହରିଚନ୍ଦନ, ଚମ୍ପତି ସିଂହ, କୁଆଲ ସିଂହ, ଦକ୍ଷିଣ ରାୟ, ରାଉତରାୟ, ବାହାବଳୀନ୍ଦ୍ର, ଦକ୍ଷିଣ କବାଟ, ପଶ୍ଚିମ କବାଟ, ଉତ୍ତର କବାଟ, ଉଦୟଭାନୁ, ସୁମନ୍ତ ପଟ୍ଟନାୟକ, ଶ୍ରୀଚନ୍ଦନ, ଜଗଦେବ, ବଳବନ୍ତରା, ରାଉତରା ଇତ୍ୟାଦି ଇତ୍ୟାଦି, ବୀର ପାଇକବର୍ଗ ଆଜ ଦଶହରା ଅନୁକୂଳ ଲଗ୍ନରେ ସମସ୍ତ, ସଶସ୍ତ୍ର, ସଜପହାର, ସଭେଟି, ସଶ୍ରଦ୍ଧା, ସଭକ୍ତ, ସଅର୍ଥ, ସସମ୍ମାନ ଆସି ଦରବାରରେ ହାଜର ଦେଇ ରଣପୁର ବଜ୍ରଧର ନରେନ୍ଦ୍ରଙ୍କୁ ଦିଗ୍‌ବିଜୟରେ, ଶତ୍ରୁ ଦମନରେ ଅରିଗଞ୍ଜନରେ ଭାଗ ନଅନ୍ତୁ ।

ପୁରୋହିତ—ବର୍ତ୍ତମାନ ଦାବୀ ଉପାଧି ବଣ୍ଟନ ପାଇଁ । ମହାମାନ୍ୟବର ଶ୍ରୀଛାମୁଙ୍କର ଆଦେଶ ହେଉ ।

(ବଡ଼ କାଠ ବାହାରେ ବାଜଥିବା)

ରାଜା—(ସୁନାହାର ଗୋଟିଏ ମିସ୍ କରବୀଙ୍କୁ ଦେବା)

ମିସ୍ କରବୀ—(ରାଜାଙ୍କ ଅନୁଗ୍ରହ ଧରି ମୁଣ୍ଡ ନୁଆଁଇବା)

ରାଜା—ବଳବନ୍ତରା—

ବଳବନ୍ତରା—ହଜୁର—

ରାଜା—ଦେଓ୍ବାନ

ଦେଓ୍ବାନ—ହଜୁର

ରାଜା—ନାଜର

ପୁରୋହିତ—ଦରବାର ଗହ୍ୱଣରୁ ବଡ଼େ ହେବା ପାଇଁ ଅଦେଶ ହେଉ—
ବଡ଼ କାଠ ବାଜୁଥିଲା)

ରାଜା—ପୁରୋହିତେ—

ପୁରୋହିତ—ଆଜ୍ଞା, ଦରବାର ଗହ୍ୱଣରେ ବଡ଼େ ହେବା ପାଇଁ ଅଦେଶ
ହେଉ—

ରାଜା—ସରବରାକାର

କପିଳ—ଆଜ୍ଞା, ଧରାଧରଶ୍ୱର ମହାମହିମ ପଣ୍ଡିତ ପୁଣ୍ୟ ପ୍ରତାପକେଶରୀ
ବଂଶଜ, ବୈରୀଗଜଭଞ୍ଜନ, ଦର୍ପହର ତାପନାଶନ, ଶତ୍ରୁଦମନ
ଶାନ୍ତିପାଳନ—ଶିଷ୍ଟଶୋଭନ—ହଜୁର, ଶୀଘ୍ର ମୁ।

ରାଜା—ଦେଓ୍ୱାନ, ସବୁ ପାଇକ ନିଯୋଗ ହାଜର······

କପିଳ—ହଜୁର, ପାଇକମଣ୍ଡଳୀ, ସୈନ୍ୟସାମନ୍ତ ସଭ୍ୟ, ସଙ୍ଗୀତ
ସମୁପସ୍ଥିତ···

(ବାହାରେ ବଡ଼ କାଠ ବାଜିବା)

ରାଜା—କଅଣ ସାହେବ ପାଇଁ ଅପେକ୍ଷା କରାଯିବ ?

ଦେଓ୍ୱାନ—ଏତ ଲଗ୍ନ କଥା, ବଂଶକୁଳ କୀର୍ତ୍ତି ପ୍ରଥା—

ପୁରୋହିତ—ଲଗ୍ନ ମଙ୍ଗଳ ଯିବ (ବଡ଼କାଠ ବାଜିବା)

ରାଜା—କରିବା, ସବୁ ଯନ୍ତ୍ରରେ ରହିଛୁ ମା—

କାରବା—Your majesty.

କପିଳ—ବୈରୀଗଞ୍ଜନ, ନରେନ୍ଦ୍ର, ମଙ୍ଗଳ କ୍ଷତ୍ରିୟ ବଂଶ ସୂର୍ଯ୍ୟ ଚଣ୍ଡପ୍ରତାପ
ମହାମାନ୍ୟ...(ଙ୍କ ଠିଆ ହେବା)
(ଏହି ସମୟରେ ଦପ୍ ଦପ୍ ବେଜଲଗେଟ ଅସିବା, ପଛେ
ପଛେ ତାର ସିଲଟାଗ୍ରା ସର୍ଦ୍ଦାର)

ବେଜଲଗେଟ୍—Good day, Raja saheb—

ର କରବା—(ନମସ୍କାର ସହ) Your honour.

ଦେଓ୍ୱାନ—(ପ୍ରଣିପାତ)

ଲବଙ୍ଗୁର—(ପ୍ରଣିପାତ)

କପିଳ—(ପ୍ରଣିପାତ)
ରାଜା—(ମୁଣ୍ଡ ଅସନ ଦେଖାଇ) Good day.
ବେଜଲଗେଟ୍—ଏ ସବୁ କ୍ୟାହେ, ମିସ୍ କରବା।
କରବା—Your honour. To-day the Dasaharas, tradition says that kings used to start his military expedition.
( ବାହାରେ ବଡକାଠ )
ବେଜଲଗେଟ୍—ଏ ସବୁ କ୍ୟା ଫାଇଦା ହୈ···
ରାଜା—ଏ ସବୁ ବଂଶପରମ୍ପରା—
ମିସ୍ କରବା—Your honour, simple traditonal.
ବେଜଲଗେଟ—( ପାଇକମାନେ ଖଣ୍ଡା ଧରି ଠିଆ ହୋଇଥିଲେ, ସେମାନଙ୍କୁ ଗୃହି )
No no these ugly···
କରବା—Your honour.
ବେଜଲ—You have to stop···these barbarian traditions.
ରାଜା—Your honour.
ବେଜଲ—You have to stop nonsence practices.
( ବାହାରେ ଶୁଣାଗଲା ଇନ୍‌କିଲାବ ଜିନ୍ଦାବାଦ )
ବେଜଲ—What is this. ( out of temper ) (ବାହାରକୁ ଗୁଳିମିବା ଭଳି ଅଭିନୟ) ଆମ ଲୋକ ଜଙ୍ଗଲରେ ଏ ସବୁ ଶୁଣିଲାମ। (କାଗଜଟାଏ ପକେଟରୁ ବାହାର କରି ଫିଙ୍ଗି ଦେଇ ଏ ସବୁ ରାଜା କ୍ୟାହେ, ଡମନ ଦରକାର, ଡମନ ଦରକାର।
ରାଜା—Your honour, ଦମନ କରାଯିବ।
ବେଜଲ—Pass order for peace or, I will declare the state to be···
ରାଜା—Your honour.

ବେଜଲ—What your honour···

(ବାହାରେ ଇନ୍‌କିଲାବ ଜିନ୍ଦାବାଦ, ରାଜବନ୍ଦୀ—ମୁକ୍ତିକର, ଦାବିପତ୍ର—ପୂରଣ କର)

ବେଜଲ—ଏ କ୍ୟା ଡାବିପତ୍ର ହେ, Rajasaheb.

କରଣ୍ଡା—Your honour.

ରାଜା—Your honour.

ବେଜଲ—We english people in British empire exist for administration of justic.

(ବାହାରେ ଶୁଣାଗଲା ଇଂରେଜ ରାଜ୍ୟ ଧ୍ୱଂସ ହେଉ, ଫିରଙ୍ଗି ରାଜ୍ୟ ଧ୍ୱଂସ ହେଉ)

ବେଜଲ—( ଥରିଯିବା ) ମାଇଁ ବୁଢ଼ା ବଏଲସ ରାଜା ସାହେବ, ( ଟେବୁଲରେ ହାତ ମାରି ) ଇଉ ହାଭ୍ ଟୁ କଣ୍ଟ୍ରୋଲ ଦ ଷ୍ଟେଟ ଅର୍ ଇଉ ଲିଭ୍। ଆଇ ଉଇଲ୍ ଆସଟ୍, ଆଇ ଉଇଲ ସ୍ମାଶ୍ ଆଇ ଉଇଲ ଡେଷ୍ଟ୍ରୟ।

ରାଜା—ଇଓର ଅନର୍।

(ଏତିକି ବେଳେ ବାହାରେ ଶୁଭିଲା ଦାବିପତ୍ର ପୂରଣ କର) ଲକ୍ଷ୍ମୀ ଷ୍ଟିଅଙ୍କୁ ବାହାର କର। ଇଂରେଜ ଶାସନ ଧ୍ୱଂସ ହେଉ, ଇନ୍‌କିଲାବ ଇତ୍ୟାଦି ଇତ୍ୟାଦି।

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

(୧୯୩୧ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ—ବିପ୍ଳବୀ ଜନସଙ୍ଘ, ମଦନ ଦାସ, ନିଧି ସେନାପତି, ଦରାଜ, ଅର୍ଜୁନ ରାଉତ, ରଘୁ ମହାନ୍ତି ପ୍ରଭୃତି ଉପସ୍ଥିତ ···ବିପ୍ଳବୀ ଜନତା—)

ରଘୁ—ତଥାପି ଭାଇମାନେ, ଧୀର ସ୍ଥିର ହୁଅ । ଆମର ଦାବିପତ୍ର କେତେକାଂଶରେ ଗୃହୀତ ହୋଇଥିଲେ ମଧ୍ୟ—ସ୍ୱାଧୀନତା ବହୁଦୂରେ । ସେହି ସ୍ୱାଧୀନ ଦେଶର ପୂର୍ବାକାଶରେ ସୂର୍ଯ୍ୟ କୃଷ୍ଣ ମେଘ ତଳେ···ପାହାନ୍ତା ହୋଇଛି ମାତ୍ର···

ଆଜି ଆମ୍ଭମାନଙ୍କର ନେତା, ସହକର୍ମୀ ସିନ୍ଧୁ ମିଶ୍ର ଜେଲରେ ଅଛି ଆମ୍ଭମାନଙ୍କର ରଣପୁର ପ୍ରତିମୂର୍ତ୍ତି ନାରୀ ନେତ୍ରୀ କମଳା ମଧ୍ୟ ପଥର ପାଚେରୀ କାରାଗାର ତଟଳ—ଏ ପର୍ଯ୍ୟନ୍ତ ଭିଏ କେଉଁଠି ଛଦ୍ମବେଶରେ ଅଛନ୍ତି । ଆପଣମାନେ ଧୀର ସ୍ଥିର ହୁଅନ୍ତୁ । ଏକଦଗରେ ସ୍ୱାଧୀନତା ପାଇଁ ସଂଗ୍ରାମ, ଅନ୍ୟ ଦଗରେ ସାମୟିକ ଲୋଭ ମୋହ ଯୋଗୁଁ ପଦ ସ୍ଖଳନ, ଏକ ଦଗରେ ସରକାରଙ୍କର ଗୁଳି ଗୋଳା ଅନ୍ୟ ଦଗରେ ଆମର ଅହିଂସା—ଶୃଙ୍ଖଳା ହେଉଛି ସ୍ୱାଧୀନତାର ସାଥି । ସହିଷ୍ଣୁତା ସ୍ୱାଧୀନତାର ସମ୍ପଦ । ଧୈର୍ଯ୍ୟ ମୁକ୍ତିର ପ୍ରତୀକ । ଅହିଂସା ହୃଦୟ ବିଜୟର ଲକ୍ଷଣ—କ୍ଷମା ହେଉଛି ସ୍ୱାଧୀନତାକାମୀ ବ୍ୟକ୍ତିର ଦୈନନ୍ଦିନ ଭୂଷଣ—ରାଜା ଦାବିପତ୍ର ଗ୍ରହଣ କଲେ ମଧ୍ୟ ଆମ୍ଭମାନଙ୍କର ସ୍ୱାଧୀନତା ସଂଗ୍ରାମ ପୂର୍ଣ୍ଣ ହୋଇନାହିଁ । ଆମ୍ଭମାନଙ୍କର ଲକ୍ଷ ଇଂରେଜଙ୍କର ସାମ୍ରାଜ୍ୟ ଲୋପ, ଭାରତୀୟ ଉପସାଗର କୋଳରେ ନିର୍ଜନ ବେଳା ଭୂମିରୁ ଯେଉଁ ଦିନ ଇଂରେଜ ଯାତ୍ରୀ ସାହେବ ଶାସକବାହୀ ଜାହାଜର ନିଃଶ୍ୱାସ ଶୁଣିବ, ସେହି ଦିନ ଆମେ ପୂର୍ଣ୍ଣ ସ୍ୱାଧୀନ ହେବା । ବର୍ତ୍ତମାନ ମଧ୍ୟ ଆମ୍ଭେମାନେ ପରାଧୀନ ।

ସ୍ୱଭମାନେ ଅଛି ପୂର୍ଣ୍ଣିମାରେ ଏହି ପତାକାକୁ ଅଭିନନ୍ଦନ କର । ସମ୍ବର୍ଦ୍ଧନା କର । ରଣପୁର ପ୍ରଜାମଣ୍ଡଳକୁ ଅଧିକ ଦୃଢ଼ କର । ଆମ୍ଭମାନଙ୍କର ହାତମୁଠା ଠାଣ କର ।

(ସଙ୍ଗରେ ଶୁଭୁଛି ଇନ୍‌କିଲାବ ଜିନ୍ଦାବାଦ, ପ୍ରଜାମଣ୍ଡଳ କି ଜୟ)

ରଘୁ—ଆପଣମାନେ ସ୍ୱାଧୀନତାକୁ ଚିହ୍ନି ଜାଣିଲେ ସ୍ୱାଧୀନତା ମିଳିବ । ଏହା ଅମୂଲ୍ୟ ଦୁର୍ଲ୍ଲଭ ସମ୍ପଦ । ଆପଣମାନେ ପୂର୍ଣ୍ଣ ଶୃଙ୍ଖଳିତ ଭାବରେ ଧୀର ସ୍ଥିର ଭାବରେ ଅପେକ୍ଷା କରନ୍ତୁ ।

ଜନତା ଭିତରୁ ଜଣେ—ଆମର ଦଅନ ବାବୁଙ୍କ କଥା ଆଗେ ବୁଝା-ଯାଉ । ଫଗୁ ମହାନ୍ତି ଦଅନ, ସାନ ଦଅନ, ଦାରୋଗା, ରେଞ୍ଜର, ଡାକମାଷ୍ଟ୍ର, ନାଜର, ମୋହରର, ଏମାନଙ୍କର ବିଚାର ହେବା ଉଚିତ । ଏମାନେ ଆମ ଚଉଦକୋଶରେ ଯାହା ଅନ୍ୟାୟ କରିଛନ୍ତି—

ରଘୁ— ତଥାପି, ଆପଣ ଧୀରସ୍ଥିର ହୁଅନ୍ତୁ, ବେଳେ ସବୁ ହୋଇଯିବ । ସେହି ରଜା ପୁଣି ବୁଝିବ —

ଜନତା—ଆଜ୍ଞା, ଗଛ, ମାଛ କାଠ ସବୁ ଛାଡ଼ିବେଟି ?

ରଘୁ—ରଜାଙ୍କୁ ଦାବପକ୍ଷରେ କୁହା ଯାଇଥିଲା । ରଜା ରାଇଜରେ ଘର । ପୁଣି ବିଦେଶୀମାନଙ୍କ ଶାସନ । ଢେଙ୍କି ଢେଙ୍କିକେ ଅନ । କେତେବେଳେ କଣ ହେବ କିଏ କହିପାରେ ।

ଜନତା ମଧ୍ୟରୁ ଜଣେ—ହଁ ଆଜ୍ଞା ଢେଙ୍କି ଢେଙ୍କିକେ ଅନ—

ରଘୁ—ତଥାପି ଆମ୍ଭେମାନେ ଆମ ବ୍ରତ ପଥରେ ଅଟଳ ରହିବା ଦରକାର ।

ଅର୍ଜ୍ଜୁନ—ଆଜ୍ଞା କପିଳ ପାଢ଼ି—

ରଘୁ—ତୁମେ ଭୁଲ ବୁଝୁଛ ଅର୍ଜ୍ଜୁନ । ମନୁଷ୍ୟ ପ୍ରକୃତିର ଦୋଷ । କପିଳ ପାଢ଼ି ହେଉନ୍ତୁ ବା ଯେ ହେଉନ୍ତୁ, ଦଲାଲ ହେବାକୁ କିଏ ଭଲ ନ ପାଏ ?

ପଦନ—ହଁ, ହଁ ଦଲାଲ ହେବାଠୁଁ ବଳି କଣ ଖାସି ମାଉଁସ ବଳି-ସୁଆଦ ?

ଜନତା-ମଧ୍ୟରୁ-ଜଣେ—ତାକୁ ଖାଲି ମାଡ଼—

ଅର୍ଜୁନ—ଛି ଭାଇ, ତାକୁ ତା ମନରୁ ବୁଝାଇବା ଦରକାର, ମାଡରେ କେତେ ଦିନ ପାଇଁ ଜଣେ ଶାସନ ହେବ ?

(ଦୂରରୁ ଲୋକ ହୋ ହୋ କରି ଉଠିଲେ)

ଜନତା—ସାହେବ ଆସିଲା—ଆସିଲା—

(ମଟର ହର୍ଣ୍ଣ ଶୁଭିଲା )

ରଘୁ—ବାଟ ଛାଡ଼ ଦିଅ ବାଟ ଛାଡ଼ ଦିଅ ।

ଜନତା—ଲୋକେ ପାଟି କଲେ ସାହେବ ଆସିଲା ଆସିଲା ।

(ବେଜାଲଗେଟ ପୂର୍ଣ୍ଣ ସାହେବ ପୋଷାକରେ । ପଛେ ପଛେ ଏକ ହାବଲଦାର । ସେହି ବାଟ ଦେଇ ଉଆସ ଭିତରକୁ ପଶିଯିବା । ପଛେ ସ୍ଥାନ ଦିଅନ ) ।

ଜନତା—ସାହେବଙ୍କୁ କହ, ସାହେବଙ୍କୁ କହ, ଆମେ ଏ ଅମଲାମାନଙ୍କୁ ଚାହୁଁନା ।

ରଘୁ—ଅରେ ତମେମାନେ ଧୀର ସ୍ଥିର ହୁଅ । ଜଣେ ଦୁଇଜଣ ଅମଲା ବଦଳି ହୋଇଗଲେ କଣ ସ୍ୱାଧୀନତା ମିଳିଯିବ ? ଆମର ପରା ଲକ୍ଷ୍ୟ ସ୍ୱାଧୀନତା—

ଜନତା—ହଁ ଲକ୍ଷ ସ୍ୱାଧୀନତା, ଖାଲି ସ୍ୱାଧୀନତା—

ରଘୁ—ତେବେ ସାମାନ୍ୟ କଥା ପାଇଁ ଏତେ ବ୍ୟସ୍ତ କାହିଁକି ?

ଜନତା—ସାହେବ ଆଗରେ ଦିଅନ ଫଗୁ ମହାନ୍ତି, କପିଳପାଣ୍ଡ, ଜମାଦାରଙ୍କ କଥା ପଡ଼ିବଟି ?

ରଘୁ—ପୁଣି ସେହି କଥା, ପ୍ରତିଶୋଧ ଆମର ଉଦ୍ଦେଶ୍ୟ ନୁହେଁ ।

ଜନତା—ପ୍ରତିଶୋଧ ଆମର ଉଦ୍ଦେଶ୍ୟ ନୁହେଁ ସତ—

ରଘୁ—ସେମାନେ ସବୁ କୀଟଠାରୁ ହୀନ । ପୋକ ମାଛିଠାରୁ ବଳହୀନ ।

ଜନତା—ହଁ, ପୋକ ମାଛିଠାରୁ ହୀନ, ହଁ ହଁ ପୋକ ମାଛିଠାରୁ ହୀନ ।

(ଉଆସ ଭିତରେ ବେଜାଲ ଗେଟ ପାଟି କରିବା ଉତ୍ୟକ୍ତ ହୋଇ )

ବେଜାଲ—Why so many Crowd. why ? I demand explanation.

(ଏହି ସମୟରେ ଲୋଧାଚୁଆରୁ ଦୁଇଜଣ ଲୋକଙ୍କୁ ଟେକି ଆଣିବା ଜନତା ମଧ୍ୟରେ ପାଟି ଶୁଭିଲା, "ସାହେବ ମାରି ଦେଲା, ମାରି ଦେଲା"—ଜଣେ ଲୋକ ଧାଇଁ ଆସି ରଘୁ ମହାନ୍ତି ଆଗରେ କହିବା— )

ଜନୈକ ବ୍ୟକ୍ତି—ଆଜ୍ଞା, ଲୋଧାଚୁଆଠି ଏହି ଶଳା ସାହେବ, ଦୁଇ-ଜଣଙ୍କୁ ଗୁଳି ଦେଲା । ଆମେ ଯାଉଛୁ ତାଙ୍କୁ ନେଇଁ ଡାକ୍ତର ମାଇନା ପାଇଁ—ଯୋଗୀ ସାହିକୁ...

(ଜନତା ପାଟି କରିବା)

ରଘୁ—ଭାଇମାନେ, ପାଟି କରନ୍ତୁ ନାହିଁ, ପାଟି କରନ୍ତୁ ନାହିଁ । ଧୀର ସ୍ଥିର ହୁଅନ୍ତୁ ।

ଜନତା—ମାରି ଦେଲା...ମାରି, ଦେଲା, ମାରି ଦେଲା, ଗୁଳି ଦେଲା

( ଏହି ସମୟରେ ବେଜଲଗେଟ ଉତ୍ତ୍ୟକ୍ତ ହୋଇ ଗୃହରୁ ଆସିଲା )

ବେଜଲ—Why so unlawful Crowd ? Disperse, Disperse Disperse, Havildar Subadar,

(ହାବିଲଦାର ପଛରେ ଆସି ଠିଆ ହେବା )

ରଘୁ—ଧୀର ସ୍ଥିର ହୁଅ ଭାଇମାନେ, ଧୀର ସ୍ଥିର ହୁଅ...

ବେଜଲ—(ରଘୁ ପ୍ରତି) Why this Crowd ?

ରଘୁ—Sir the down trodden, long oppressed, Starving thousands...have gatherd to have their 'ଦାବୀପତ୍ର' formally signed by the ruler.

ବେଜଲ—Nonsense କ୍ୟା ଡାବୀପତ୍ର ? Bloody, Let me have a copy.

(ସଦନ ଦାସ ଖଣ୍ଡେ ପତ୍ର ଦେଲା)

ବେଜଲ—ଓ୍ୱାଟ ଫୁଲିସ ଆଇଡ଼ିଆ (ଚିରି ଦେଇ) ଡ଼େମ ଫୁଲସ୍ । British empire is Britishe empire

(ଏହି ସମୟରେ ଠେଲା ପେଲା ହୋଇ, ଦୁଇଗୋଟି ଅଧାମରା ଲୋକଙ୍କୁ ଧରି କେତେକଙ୍କର ପ୍ରବେଶ ) ।

ବେଜଲ—ହ୍ୱାଟ୍‌ ଅର୍‌ ଦଜ୍‌ ଡେଡ୍‌ ବଡ଼ିଜ୍‌ ।
ଜନତା—ଯୋଗୀ ସାହବ୍ଙ୍କୁ ଗୁଳି, ଡାକ୍ତର ମାଇନା କରି ଦେଶ ଗୁଳି ।
ଏହି ସାହେବ ମାରିଛି ସେ···ଏହି ସାହେବ ମାରିଛି ଯେ
ରଘୁ—ଧୀର ସ୍ଥିର ହୁଅ ।
ଜନତା—ଏହି ସାହେବ ମାରିଛି । ଅରେ ଏହି ସାହେବ—
ଅର୍ଜ୍ଜୁନ—ଧୀର ସ୍ଥିର ହୁଅ ଭାଇମାନେ ।
ପଦନ—ବସ, ବସ,
ରଘୁ—ବସ, ବସ,
ବେଜଲ—(ଶବ ଦୁଇଟାଙ୍କୁ ଦେଖିବାକୁ ଗାଡ଼ ପଛରେ ଯିବା) (ଲୋକେ
କମେ କମେ ମାଡ଼ ଅସିଲେ ଅଗକୁ ) ।
ବେଜଲ —(ପଛରୁ ଉଡ଼ଧରି) (ଠେଲା ପେଲା ଗୁଳିଲା, ସାହେବ ଉପରେ
ପଡ଼ିଲେ) ।
ରଘୁ—ଭାଇମାନେ ବସ ବସ ଥୟ ଧର ।
[ଶବ ଦୁଇଟିକୁ ଧରି ଦଳେ ଅଗକୁ ଗୁଳିଗଲେ । ଦଳେ ବେଶୀ
ଠେଲା ଠେଲି ହେଲେ । ସାହେବ ଅବସ୍ଥା ସାଙ୍ଘାତିକ ହେଲା ]
ସାହେବ—ହଟୋ ହଟୋ, ଠଇରୋ ଠଇରୋ—ଦେଓ୍ୱାନ—
ଦେଓ୍ୟାନ୍‌—ଯ୍ୱୋର ହନର (ଥରି ଥରି)
ବଜେଲ—ଡସ୍‌ପ ସ'ଦ ବାଉଡ଼... ମଗାଅ ପୋଲିସ ହାବିଲଦାର ?
ହାବିଲ ଦାର—ଯ୍ୱୋର ହନର ।
ବଜେଲ—ଚଲାଓ ଗୁଳି—ଟେଡି
ହାବିଲ—(ବନ୍ଧୁକ କାଢ଼ି ଠିଆ ହେଲା—)
ବେଜଲ—(ନିଜେ ରିଭଲଭର କାଢ଼ିବା) ହଟୋ, ହଟୋ···
ଜନତା—ନାହିଁ ହଟେଗା,
ବେଜଲ—ନାହିଁ ହଟେଗା ?
ଅର୍ଜୁନ—ସାହେବ, ଅପର୍ଓ୍ୟାପସ ଯାଅ, ଓ୍ୟାପିସଯାଅ, ଯାଅ
ଜନତା—ସାହେବ ଓ୍ୟାପସ ଯାଅ···(ଠେଲା ଠେଲି, ପେଲା ପେଲି)
ସାହେବ—(ହଠାତ୍ ରିଭଲଭର କାଢ଼ି—ପଏଣ୍ଟ କରି ଅର୍ଜୁନ ଛାତିକୁ)

ଅର୍ଜ୍ଜୁନ—ଓ୍ୟାପସ ଯାଅ, ଓ୍ୟାପସ ଯାଅ···
ରଘୁ—ଆର୍ ପ୍ଲିଜ ସାର୍ ପିସ୍, ଅର୍ଡର,
ବେଜଲ—ଠଇରୋ···
ଜନତା—ଅରେ ଏହୁ ମାରୁଛିରେ, ଧରରେ···
ବେଜଲ—ୟୁ ବ୍ଲଡି ଫୁଲସ୍···
ଅର୍ଜ୍ଜୁନ—ସାହେବ···ଫେରିଯାଅ,ରାଜା ଶାସନ ଧ୍ୱଂସ ହେଉ,ଫେରିଯାଅ।
ରଘୁ—ଶାନ୍ତ, ଶାନ୍ତ, ଶାନ୍ତ, ଅର୍ଡର,ଅର୍ଡର, ଥଯ୍ୟଧର, ଥଯ୍ୟଧର···
ବେଜଲ—ଏକ ଗୁଳି ମାରିବା ଫଳରେ ଅର୍ଜ୍ଜୁନ ଗଡ଼ିତ ତଳେ ପଡ଼ିଯିବା ।
ରଘୁ—ଭାଇମାନେ ବସ, ବସ, ବସ, ଧୀରସ୍ଥିର ହୁଅ···
(ଜନତା ଉତ୍ତେଜିତ, ଠେଙ୍ଗା କାଢ଼ି ସାହେବ ଉପରେ ପ୍ରହାର)
ବେଜଲ—ଅଃ ଅଇ ଉଇଲ୍ ସ୍ୱାସ, ଅଇ ଉଇଲ୍ ସ୍ୱାସ୍, ଅଇ ଉଇଲ କିଲ୍···ଇଉ ଫୁଲସ୍ ।
(ସାହେବ ରକ୍ତ ବାନ୍ତିକରି ମରିପଡ଼ିବା—ହାବିଲଦାର ମୁଖ ମୃତ—ଆନ ଦେଓ୍ୱାନ ମୂର୍ଚ୍ଛିତ ଜଣେ ଗୋଟିଏ ପଥର ଆଣି ସାହେବ ମୁଣ୍ଡରେ ଛେଚିବା )—
ରଘୁ—(ଆଖି ଏଡ଼ିକି ଏଡ଼ିକି କରି)କଣ ହେଲା । ସର୍ବନାଶ, ସର୍ବନାଶ···
ମଦନ—ସର୍ବନାଶ—
ରଘୁ—ଭାଇମାନେ, ସ୍ୱାଧୀନତାକୁ ଏଇଠାରେ ଅଘାତ ଦେଲ ସିନା, ସ୍ୱାଧୀନତା ସଂଗ୍ରାମକୁ ଦଶ୍ୱଶ ବର୍ଷ ପଛକୁ ନେଇ ଗଲ ସିନା···
ମଦନ—ଅର୍ଜ୍ଜୁନ ଗଡ଼ିତ ଦେଖ···
ରଘୁ—ଭାଇମାନେ କଣ କଲ ?
( ଏହାପରେ ସମସ୍ତେ ପ୍ରାଣ ବଞ୍ଚଲରେ ଧାଇଁଯିବା—ଛତ୍ରଭଙ୍ଗ ) ।
ରଘୁ—ସ୍ୱାଧୀନତା ସଂଗ୍ରାମର ପ୍ରଥମ ଶ୍ମଶାନରେ ଃଅହା (କହୁ···କାନ୍ଦକୁ ଖେ ଖେ )
—ଠକ୍ଟ ପତନ—

## ପଞ୍ଚମ ଅଙ୍କ
## ଦ୍ୱିତୀୟ ଦୃଶ୍ୟ

(ରଣପୁର ଗାଁ ଗହଳ—ଲୋକମାନେ ଖାଲି ଗଣ୍ଠିଲି ବୁଜୁଳି ଧରି ପଳାଉଛନ୍ତି···ଗୋଟିଏ ଦଳର ଦୁଇଜଣଙ୍କୁ ଧରି ରାସ୍ତା ଉପରେ ଦାରୋଗା ଠିଆ ହୋଇଛନ୍ତି )

ପୋଲିସ—ତମକୁ ସାକ୍ଷୀ ଦେବାକୁ ପଡ଼ିବ । ତମେ କହିବ ରଘୁ ମହାନ୍ତି ସାହେବକୁ ମାଇଲା, ଦିବାକର ପରିଡ଼ା ଠେଙ୍ଗାରେ ପିଟିଲା, ବସନ୍ତ ପଥର ଫିଙ୍ଗିଲା ।

ଦାରୋଗା—ତମେ କହିବାକୁ ହେବ, ରଘୁ, ଦିବାକର, ବସନ୍ତ ସମସ୍ତେ ମିଶି ସାହେବକୁ ମାରିଛନ୍ତି ।

ବାଡୋଇ—ନାହିଁ ଆଜ୍ଞା—ମୁଁ ଦେଖିନି ।

ପୋଲିସ—(ବାଡ଼େଇବା)

ଦାରୋଗା—ଆରେଷ୍ଟ କର ।

(ଅଳ୍ପ କିଛି ସମୟ ପରେ ଏକଦଳ ବନ୍ଦୀକୁ ଧରି ହାବିଲଦାର ଗୁର୍ଖା କନେଷ୍ଟବଲ ସହ ଆସିବା···ସଙ୍ଗେ ସଙ୍ଗେ କପିଳ ପାଣି ମଧ୍ୟ···କପିଳ ପାଣି ପିଠିରେ 'ରାଜଭକ୍ତ' ଲେଖାଇବା ପରେ କାଗଜ ।)

କପିଳ—(ଲୋକଙ୍କୁ ଚାହିଁ) ପୁଅ, ବମ୍ବା ପଡ଼ିଲା, ବମ୍ବା ପଡ଼ିଲା । ବକ ବକ କଲେ କତଲ କରିଦେବେ । ଗୁର୍ଖା ପଞ୍ଜାବୀ ଖାଲି ବୋମ୍ବା ଆଣି ପକାଇ ଦେଲେଣି । ରଣପୁର ଧ୍ୱଂସ ହେଲା । କୃଷ୍ଣଚନ୍ଦ୍ର ନରେନ୍ଦ୍ର ମହାପାତ୍ରଙ୍କ ରାଜ୍ୟରେ ବୋମ୍ବା ପଡ଼ିଲା ।

ଆରେ ସବୁ କହିଦଅ । ସେହି ରଘୁ, ଦିବାକର, ବସନ୍ତ ମାରିଛନ୍ତି, ଆମେ ରାଜଭକ୍ତ, ଆମର ଟିକଟ ଅଛି । ଆମେ ରାଜଭକ୍ତ ଆମର ସାଇନ୍ ବୋର୍ଡ଼ ଅଛି । ଆମେ ରାଜଭକ୍ତ ପୂରା ରାଜଭକ୍ତ, ଖାଣ୍ଟି ରାଜଭକ୍ତ । ଆମର ଏହି ଟିକଟ ଅଛି ଦେଖ ।

—ଯବନିକା ପତନ—

# ପଞ୍ଚମ ଅଙ୍କ

## ତୃତୀୟ ଦୃଶ୍ୟ

(ଅନ୍ଧ ଗୀତ ଗାଇ ଗାଇ ଚାଲିଛି ରାଜପଥରେ; ସେହି ଗୀତରେ ରଣପୁରରେ ବେଜଲ ଗେଠ ମରିବା ପରେ ଯେଉଁ ମଶାଣି ଛନିଆ କୋବୁଆ ଭସ୍ମ ଖେଳ ଯାଇଥିଲା, ତାହାର ଦରଦ)

ମିଏ ଯହିଁ ଅଛ ପଳାରେ ପଳା

ମିଛ ଖର କହି,

ଧରମ ଦେବତା; ଆଖିରେ ଅଙ୍ଗୁଠି ଦେଇ,

ଏ ଯେଉଁ ରାଇଜ, ବୁଝାମଣା ଚାଲେ, କେହିତ ଶୁଣିବେ ନାହିଁ,

ମଟିଷ ରାଇଜ, ମଶାଣି ହୋଇଲା; ତହିଁରେ ନାଚିଲା ବାଲୁଆ ପିଲା

କାହା ପାଇଁ ଭାଇ ସତେ, ସାହେବ ମରିଲା, କାହାଠେ ଶିଖିଲା ପଢିଲା ଭଲ

ଗଣ୍ଡା ଗଣ୍ଡା ଯାଉ, ଉତ୍କଳ ବେଭାର, ମନମୁଣ୍ଡିଆଙ୍କ ଅଚ୍ଛୁକା ଥାନ

ବନ୍ଧୁକ କୋରଡ଼ା, ଏ ଧରମ ଛଡ଼ା, ଦୁଃଖୀ ପରଜାର ମରଣ ଜାଣ,

ଲୁଣି ନେଇ ସତେ, ଲୁଣିଆ ଯେତେକ କରିବେ ଯଣିକେ ନଳାକୁ ଧଳା,

ଜୀବନ ବାକଲେ ମିଏ ଯହିଁ ଅଛ, ରଣପୁର ଛଉ ପଳାରେ ପଳା,

ଘଟର ଘଟର ଏବେ ଲାଗିବ କୋରଡ଼ା ଲାଗିବ ଚାବୁକ ମାଡ଼ଟି ପରା

ଧୂଆ ଅଧୂଆରେ ଦୋଷ ନିର୍ଦ୍ଦୋଷରେ, କେତେଭାଇ ଆମ ହେଲେଣି ଧରା

ଜୀବନ ବାକଲେ ପଳାରେ ପଳା

ଏ ଦେଶର ଭାଇ ଏ ଦେଶ ଭାଇଙ୍କୁ ଦେଖାଇ ଦେବାର ମରଣ କଳା

(ଗୀତ ଗାଇ ଗାଇ ଅନ୍ଧର ପ୍ରସ୍ଥାନ)

---

## ୫ମ ଅଙ୍କ

## ଚତୁର୍ଥ ଦୃଶ୍ୟ

(ହଜାରିବାଗ ଜେଲର ଦୃଶ୍ୟ, ଗାରଦ ଭିତରେ ରଘୁ, ଦିବାକର, ବଗୃରପଣ୍ଡ, ସାହେବ ସୁବା ଠିଆ, ସମସ୍ତଙ୍କ ମୁହଁରେ ଗୋଟାଏ ଅବେଗର ଛାୟା)

(ବଗୃରପଣ୍ଡ ଶୁଣାଇବା)

ବଗୃରପଣ୍ଡ—ରଣପୁର ପ୍ରଜାମଣ୍ଡଳର ବନ୍ଦୀ ଅପରାଧୀ ଦୋଷୀଙ୍କ ମଧ୍ୟରୁ ରଘୁ ମହାନ୍ତି, ଦିବାକର ପରିଡ଼ାଙ୍କୁ ନରହତ୍ୟା ଅପରାଧରେ ଫାଶୀ ଦଣ୍ଡ ବିଧାନ ହୋଇଛି, ଆଜି ତାହା ସାବ୍ୟସ୍ତ କରାଯିବ ।

ଜେଲର—କିଏ ଅଛରେ ୱାର୍ଡର ?

ୱାର୍ଡର—(ୱାର୍ଡରର ଅବିର୍ଭାବ,) ଯେ ହଜୁର—

ଜେଲର—ଫାଶୀକାଠ ଠିକ୍ କର—

ୱାର୍ଡର—ଯେ ହଜୁର ।

(ଅନ୍ତରାଳରୁ ଗୀତ ଶୁଭିବା 'ଜୀବନ ବଳଲେ ପଳାରେ ପଳା')

ଯବନିକା ପତନ

## ୪ ମ ଅଙ୍କ

### ପଞ୍ଚମ ଦୃଶ୍ୟ

(ରଣପୁର ଗାଁ ଗହଳ ରାସ୍ତା—ବୃଦ୍ଧଟିଏ କାନ୍ଦି କାନ୍ଦି ଯାଉଥିବା ଦୃଶ୍ୟ—ବିପରୀତ ଦିଗରୁ ଅନ୍ଧର ଗୀତ ଗାଇ ପ୍ରବେଶ)

ଅନ୍ଧ—

ଘରେ ଘରେ ଏବେ ଲଗିବ କୋରଡ଼ା
ଲଗିବ ଗୃହକୁ ମାଡ଼ିକି ପଗ୍ରା
ମିଛ ସାକ୍ଷୀ ଦେଇ ଓଳିଲ ବୁଦ୍ଧାର
ଭାଇବୁକେ ଭାଇ ଚଳାଇବ ସିନା ଫାଶୀର କୁରା ।
ଜୀବନ ବାକଲେ ପଳାଟରେ ପଲା
ଲାଞ୍ଜ ନେଇ ଭାଇ ଶ୍ରୀପଦ ଝାଇ, ଥୋଇଦେବେ କର କଳାକୁ ଧଳା
ଜୀବନ ବାକଲେ ପଳାଟରେ ପଲା

ବୃଦ୍ଧ—(ଗୀତ ଶୁଣି କାନ୍ଦିବା ଉଚ୍ଚସ୍ୱରରେ)

ଅନ୍ଧ—ଭାଇ ତମେ ଏଠି କିଏ କାନ୍ଦୁଛ ?

ବୃଦ୍ଧ—କାନ୍ଦୁ ନାହିଁରେ

ଅନ୍ଧ—ମୁଁ ତ ଦେଖି ପାରୁନି, ଅନ୍ଧଲୋକ ମୁଁ ।

ବୃଦ୍ଧ—ମୁଁ ମଧ୍ୟ ଅଜଠୁ ଅନ୍ଧ ହେଲିରେ—

ଅନ୍ଧ—କଅଣ ଭାଇ ଥଟ୍ଟା କରୁଛ ?

ବୃଦ୍ଧ—ନା ହିଁରେ ଭାଇ, ତୋ ଗୀତରେ ମୁଁ ଜଳି ପୋଡ଼ି ମରି ଯାଉଛି ।

ଅନ୍ଧ—ମୋ ଗୀତ,—ଏଁ ମୋ ଗୀତରେ କାହିଁକି—କଅଣ ହେଲାକି ଭାଇ, ମୁଁ ତ ପ୍ରଜାମଣ୍ଡଳ ଚରିତକୁ ଗୀତରେ ଭଣିତ କରି ଗାଉଛି, ତମେ କଅଣ ପାତର ନଟକି ବାବୁ ?

ବୃଦ୍ଧ—ନାହିଁରେ ଭାଇ, ସେ ମୋର ପୁଅ, ତାର ପାଣ୍ଡିକୁ କଳା ଧଳା କରିଗଲେ ଏହି ସାହେବମାନେ,

ଅନ୍ଧ—କଅଣ କହୁଛ ଭାଇ, ସତେ ସେହି ରଘୁର ବାପା—ମୁଁ ଦେଖିନି, ହେଲେ ମୁଁ ଶୁଣିଛି, ରଘୁ ମହାନ୍ତି, ଦିବାକର ପରିଡ଼ା ଏ ଉଭୟ କୋଣ ମୁଲକର ଗୋଟାଏ ବନ୍ଧୁ ହେଲେ। ଆମ ଦେଶୀ ବିଦେଶୀ ସାହେବ ହାକିମ ହୁକୁମା ମିଶି, ରାଜା ଦେଓ୍ବାନ ମିଶି, ଅମଲା ପୋଲିସ ମିଶି ତାଙ୍କୁ ଫାଶୀ ଦିଆଇଦେଲେ। ଏ ରାଇଜରେ ରାଜା କଅଣ ବୁଝିଲା, ଦିଅନ ଦାରୋଗା ଅମଳୁ ମାରିଲା, କପିଳ ପାତ୍ର ସବୁ ସାରିଲା, ପୁଲଟିକାଲ ସାହେବ ତା ଦୋଷକୁ ମଣ୍ଟି, ହେଲେ ରଘୁ ଦିବାକର—(କାନ୍ଦ ପକାଇବା) ହେ ଧରମ ତୁ ଦେଖୁଥା। ବିଷ୍ଣୁର କହିବୁ, ହେ ମା ମଣିନାଗ ତୁ ପାହାଡ଼ରେ ଫାଟି ଦେଖ ଏ ଦେଶ କଅଣ ହେଲା, ଗୋରାମାନେ କଅଣ କଲେ, ଆଉ ଆମ ଦେଶର ନିମକହାରାମ ଦଳ କଅଣ କଲେ, ସେ ମହାନ ଆତ୍ମା, ଓହୋ, ସେମାନେ ସତେ କି ତ୍ୟାଗ ନ କଲେ।

ବୃଦ୍ଧ—ଅନ୍ଧ ଭାଇ, ଆଉ କହନା ଆଉ କହନା, ସେ କଥା।

ଅନ୍ଧ—(କାନ୍ଦ କାନ୍ଦ ଗୀତ ଗାଇବା)

'ଜୀବନ ବିକଲେ ପଳାରେ ପଳା'

ବୃଦ୍ଧ—ଆଉ ବୁଆଡ଼େ ଯିବା ଭାଇ। ଭେଣ୍ଡା ପୁଅ ତ ଫାଶୀ ପାଇଲା, ତା ପଛକୁ ଦିବାକର ମଧ ଗଲା, ଗାଁ ବାଲ୍ଯତ ଯେ ଯୁଆଡ଼େ ଗଲେ ଆଉ ମୁଁ ବୁଆଡ଼େ ଯିବି ଏ ବୟସରେ, ମୋ ପରି ହତଭାଗା—

ଅନ୍ଧ—ଗୀତ ଗାଇବା

କାନ୍ଦ କାନ୍ଦ ଲୁହ ରକତ ହୋଇଲେ ଶିକୁଳି ଫିଟିବ କରେ ?

ବୃଦ୍ଧ—(କାନ୍ଦକାନ୍ଦ)—ନାହିଁ, ନାହିଁ ଅନ୍ଧଭାଇ

(ଏ ସମୟରେ ବିପରୀତ ଦିଗରୁ ଆହୁରି ବାଡ଼ ଫାଟରେ କାନ୍ଦ କାନ୍ଦ ଆସିବା କପିଳ ପାତ୍ର)

ବୃଦ୍ଧ—କଟମଟ କରି ଚାହିଁବା କପିଳପାତ୍ରକୁ।

ଅନ୍ଧ—କିଏ ଅଛିଲ ?
କପିଳ—(ଭେ଼ ଭେ଼ କରି କାନ୍ଦି) ରଘୁ ବାପା । (ବୃଦ୍ଧ ମହାନ୍ତିଙ୍କର ପାଦ ଧରି ପକାଇବା) ।
ବୃଦ୍ଧ—ଏ କଅଣ, ଏ କଅଣ,—ପାଣ୍ଡେ—ଏ କଅଣ (ବିସ୍ମୟରେ)
ଅନ୍ଧ—ଏଁ ଏଁ ପାଣ୍ଡେ । କପିଳ ପାଣ୍ଡେ !
କପିଳ—(କାନ୍ଦିକାନ୍ଦି) ହଁରେ ଅନ୍ଧ, ମୁଁ କପିଳ ପାଣ୍ଡ, ମୋତେ ତୁ ଦେଖେନା, ମୁ ପାପୀ ମୁ ନିମକହାରାମ ହୁଇ ! କିଏ ଜାଣିଥିଲା ଛିମିଟି ଫେଲରୁ, ଏ ରାଜା ପୁରୁଣା ମାରଣା, ଦଅନ ଦାରୋଗା କୋଠ କଚେରୀ ବାବୁ ଅହୁରି ମାରଣା, ଭାଇ ମୋତେ କ୍ଷମାକର ମୁଁ ଆଉ ସେ କପିଳ ନୁହେଁ ରେ—
ଅନ୍ଧ—ତେବେ ତ ଏ ଗୋଟାଏ ଭେଟ ମାଜ ରଘୁ ଦିବାକର ନାହାନ୍ତି ।
କପିଳ—ଭେଟ ହେଲା ନାହିଁରେ ଅନ୍ଧଭାଇ, ଏଥୁ ମଣିନାଗ ପାହାଡ଼ ତଳେ ମଣିଷ ଦେବତା ହୋଇ ସବୁଦିନ ପାଇଁ ପୂଜା ପାଇବେ ସେଥୁ ରଘୁ, ଦିବାକର, ଆମ ଲୋକ ସଂଗ୍ରାମର ସହିଦ ସେମାନେ—ଅନ୍ଧ ଭାଇ ତୁ ଗାଅ ସେ ଗୀତଟି—ସେ ଦୁଇ ଜଣଙ୍କୁ ନମସ୍କାର, କୋଟି କୋଟି ନମସ୍କାର—ମଉସା, (ବୃଦ୍ଧକୁ ଚାହିଁ) କ୍ଷମା କରିବନି ତମେ ସତେ, କେତେ ବଡ଼,
ଅନ୍ଧ—(ଗୀତ ଗାଇ ଗୁଲିବା—)
କାନ୍ଦିକାନ୍ଦି ଲୁହ ରକତ ହୋଇଲେ ଶଙ୍ଖୁଳି ଫିଟିବ କରେ

ଯବନିକା ପତନ

---

ମୁଦ୍ରାକର—ଶ୍ରୀ ବିଶ୍ୱମ୍ଭର ପରିଡ଼ା, ପ୍ରଜାତନ୍ତ୍ର ପ୍ରେସ, କଟକ-୨